

NEHRU
BAL PUSTAKALAYA

# ବିଚିତ୍ର ବହି ଜଗତ

ସାମୁଏଲ୍ ଇସ୍ରାଏଲ

ନେହେରୁ ବାଳ ପୁସ୍ତକାଳୟ

# ବିଚିତ୍ର ବହି ଜଗତ

ସାମୁଏଲ୍ ଇସ୍‌ରାଏଲ
ଅନୁବାଦ
ଅଭିରାମ ମହାପାତ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ନୂଆ ଦିଲ୍ଲୀ

ସମର୍ପଣ

ଅବିଗେଇଲ୍, ଆଫ୍ରୀନ୍ ଅଭିଷ୍ଟ,
ଅନିତା, ଅଞ୍ଜଳି, ଲ୍ୟନ୍,
ଗୌରିଶ୍, ମୀଣାଳ, ରଚେଲ୍
ଏଲିଜାବେଥ୍, ସାରହ, ଜୁଲିଏଟ୍
ଶାରିୟାର୍, ସାଇମନ୍, ସୋଇଲ୍,
ତିଲ୍କା, ଏବଂ ଜିମ୍ମ

ନିମ୍ନଲିଖିତ ବ୍ୟକ୍ତି ଓ ସଂସ୍ଥାମାନଙ୍କ
ସୌଜନ୍ୟରୁ ଏହି ବହିରେ ଥିବା
ଚିତ୍ର ଗୁଡିକ ନିଆଯାଇଛି

ଟି. ଏସ୍. ସତ୍ୟନ୍ ପୃ. ୧
ଗୁରୁଦୟାଳ ସିଂହ ପୃ. ୪-୫
କପିଳା ବାତ୍ସ୍ୟାୟନ୍ ପୃ. ୮
ଆର୍କିଓଲୋଜିକାଲ୍ ସର୍ଭେ ପୃ. ୯, ୧୦
ନ୍ୟାସ୍‌ନାଲ ମ୍ୟୁଜିୟମ୍ ପୃ ୧୦, ୧୩, ୧୬, ୨୧
ୟୁନେସ୍କୋ କ୍ୟୁରିଅର୍ ପୃ ୧୨, ୧୮-୧୯, ୨୩
ଜିୟଉ୍ ଓ୍ୱେଲଫେୟାର ଆସୋସିଏସନ୍, ନୂଆ ଦିଲ୍ଲୀ ପୃ. ୧୬
ହରବର୍ଟ କାଗେରେର୍ ପୃ.୨୨
ଇନ୍ଦ୍ରପ୍ରସ୍ଥ ପ୍ରେସ ୨୬,୩୫,୩୬,୪୨
[illegible] ପ୍ରେସ ପୃ. ୨୮-୨୯ ୩୪, ୩୭, ୪୦-୪୧, ୪୮
ପି. ଏନ୍. ଆହୁଜା ପୃ. ୩୨, ୫୪-୫୫
ଅଭିନବ ପବ୍ଲିକେସନ୍ସ ପୃ. ୫୧
ମୋନା ଚୌଧୁରୀ ପୃ. ୫୮
ମଡର୍ଣ୍ଣ ସ୍କୁଲ ପୃ ୬୦-୬୧
ନ୍ୟାସନାଲ ଲାଇବ୍ରେରୀ ପୃ. ୬୨

1[illegible] (ଶକାବ୍ଦ 1910)





THE WONDERFUL WORLD OF BOOKS (*Oriya*)

Published by the Director, National Book Trust, India,
A-5, Green Park, New Delhi-110016




# ବିଚିତ୍ର ବହି ଜଗତ

ବହି ବିବିଧ ପ୍ରକାରର—ଏକ୍ସରସାଇଜ୍ ବହି, ହୋମ୍‌ଓ୍ୱାର୍କ ବହି ହସ୍ତାକ୍ଷର ବହି, ଡ୍ରଇଂ ଖାତା ବା ବହି, ପାଠ୍ୟପୁସ୍ତକ, ଛବିବହି, ଡାଏରୀ, ନୋଟ୍ ବହି, ଏକାଉଣ୍ଟ ବହି, ରଙ୍ଗିନ୍ ଚିତ୍ର କରିବା ବହି, ଗଳ୍ପ ବହି, ହସନ୍ତିକା ବହି, ଅନ୍ୟ ସକଳ ପ୍ରକାରର କଳ୍ପନା କରଯିବା ବିଷୟକ ବହି ଯଥା; ଆବିଷ୍କାର, ପ୍ରକୃତି-ବିଜ୍ଞାନ, ଗଣିତ-ଜ୍ୟୋତିଷ, ରନ୍ଧନ ବିଦ୍ୟା, ଫୁଟବଲ ଓ କ୍ରିକେଟ୍ ଖେଳ, ପର୍ବତ ଆରୋହଣ—ଏହି ଭଳି କେତେ ବିଷୟରେ ଯେ ବହି ହୋଇପାରେ ତାର ଅନ୍ତ ନାହିଁ । ବହି ବିଷୟରେ ମଧ୍ୟ ବହି ହୋଇପାରେ । ଏ ବହିଟି ସେ ଭଳି ଏକ ବହି ।

ତୁମର ଅଭିଧାନ ଗୋଟିଏ ବଡ଼ ବହି । ବୋଧହୁଏ ମୋଟା ବୋର୍ଡ ଓ କନା ବନ୍ଧେଇ ହୋଇଥିବ । ଯେଉଁ ହସକଥା ବହି ତୁମ ବନ୍ଧୁଠାରୁ ମାଗି ଆଣିଥିବ ତାହା ଚିକ୍କଣ କାଗଜ ମଲାଟ ଦିଆ ହୋଇଥିବ; କେତେକ ବହି ସୂତାରେ ସିଲେଇ ହୋଇଥାଏ । ଆଉ କେତେକ ଷ୍ଟାପଲ୍ ତାରରେ ପଞ୍ଚଅଡୁ ଫୋଡାଯାଇ ତିଆରି ହୋଇଥାଏ ।

ବହି ତିଆରି ପାଇଁ କି କି ଉପକରଣ ଆବଶ୍ୟକ ତାହା କେତେ ଗୁଡିଏ ବହି ଦେଖିଲେ ତୁମେ ଜାଣି ପାରିବ—କାଗଜ, ବୋର୍ଡ, କାର୍ଡ, କାଳି ଏବଂ ଆହୁରି ପରୀକ୍ଷା କରି ଦେଖିଲେ ଜାଣି ପାରିବ ଅଠା ଓ ସୂତା ଇତ୍ୟାଦି ମଧ୍ୟ ଆବଶ୍ୟକ । ଏସବୁ ଅଭିଜ୍ଞ କର୍ମୀମାନଙ୍କ ଦ୍ୱାରା ହାତ ବା ମେସିନ୍‌ରେ ସଜା ଯାଇଥାଏ । ଏସବୁ ଛାପାଖାନା ଏବଂ ଦପ୍ତରୀଖାନାରେ (ଯେଉଁଠାରେ ଛାପା ଫର୍ମ ସବୁ ଏକତ୍ର ସଜାଯାଇ ବିଧି ମୁତାବକ ସିଲେଇ ଓ ବନ୍ଧେଇ କରଯାଇ ମଲାଟ ମଡାଯାଏ) ତିଆରି ହୁଏ ।



ମାତ୍ର ଏକ୍‌ସରସାଇଜ୍ ବହି ଓ ଡ୍ରଇଂ ବହିକୁ ବାଦ୍ ଦେଲେ ବହିର ଆରମ୍ଭ କୌଣସି ପଦାର୍ଥରୁ ନ ହୋଇ ଲେଖକ ବା ଚିତ୍ରକର ବା ଉଭୟଙ୍କ ମିଳିତ ଚିନ୍ତା ଓ ଭାବନାରୁ ଆରମ୍ଭ ହୋଇଥାଏ । ତେଣୁ ଆମେ ସେହି ଆରମ୍ଭରୁ ହିଁ ବିଷୟଟି ଆରମ୍ଭ କରିବା ।

ଏହା ଶିଖ୍‌ମାନଙ୍କ ଧର୍ମଗ୍ରନ୍ଥ, ଗୁରୁ ଗ୍ରନ୍ଥ ସାହେବର ପାଣ୍ଡୁଲିପି, ଅମୃତସର ସ୍ୱର୍ଣ୍ଣମନ୍ଦିରରେ ସଂରକ୍ଷିତ । ପୃଥିବୀର ବୃହତ୍ତମ ଗ୍ରନ୍ଥମାନଙ୍କ ମଧ୍ୟରୁ ଏହା ଏକତମ ।



## କଥା କୁହା ବହି

ଲୋକେ କାହିଁକି ବହି ଲେଖନ୍ତି ? ଯେଉଁମାନେ ଭାବନ୍ତି ଯେ ସେମାନଙ୍କର ବିଶେଷ କିଛି କୌତୁକିଆ ବା ଗୁରୁତର କଥା କହିବାକୁ ଅଛି ବା ଗୋଟିଏ ଭଲ ଗଳ୍ପ କିମ୍ବା ଏକ ଚମତ୍କାର ଅନୁଭୂତି ବର୍ଣ୍ଣନା କରିବାକୁ ଅଛି, ପୃଥିବୀର ଆଉ ସମସ୍ତେ ତାଙ୍କ ସହିତ ଏକମତ ହୁଅନ୍ତୁ ବା ନ ହୁଅନ୍ତୁ, ସେମାନେ ବିଶ୍ୱାସ କରନ୍ତି ଯେ ସେମାନେ ଯାହା କହିବାକୁ ଅଛି ତାହା ତାଙ୍କ ସହିତ ଲୋପ ହୋଇ ନ ଯାଉ । ତାଙ୍କ ନିକଟରେ ଥିବା ଲୋକମାନଙ୍କ ସହିତ ଆଉ ସମସ୍ତେ ସେହି କଥା ଶୁଣି ଉପକୃତ ବା ଆନନ୍ଦିତ ହୁଅନ୍ତୁ ।

ପଣ୍ଡିତମାନେ କହନ୍ତି ଯେ ସାତ ବା ଆଠ ହଜାର ବର୍ଷ ପୂର୍ବେ ଲୋକଙ୍କ ମନରେ ଏହି ଭାବ ଆଦାନ ପ୍ରଦାନ କରିବା ଜାଗ୍ରତ ହେଲା । ମାତ୍ର ମୁଖର ଭାଷା ଛଡା ତାହା ପ୍ରକାଶ କରିବାର ଅନ୍ୟ ଉପାୟ ନଥିଲା । ଲେଖିବା ପ୍ରଣାଳୀ ସେତେବେଳକୁ ବାହାରି ନଥିଲା ବା ଅତି ପ୍ରାଥମିକ ଅନୁନ୍ନତ ଅବସ୍ଥାରେ ଥିଲା । ଉଚ୍ଚ ଚିନ୍ତାଶୀଳ ବ୍ୟକ୍ତି, ଶିକ୍ଷକ ଓ ଗଳ୍ପ କହିବା ଲୋକେ ସ୍ଥାନରୁ ସ୍ଥାନକୁ ବୁଲି ସେମାନଙ୍କର ଚିନ୍ତା ବା ଭାବନା ଲୋକଙ୍କୁ ଶୁଣାଉ ଥିଲେ କିମ୍ବା ଲୋକେ ତାଙ୍କ ନିକଟକୁ ଆସି ଶୁଣୁ ଥିଲେ । ନିଷ୍ଠାପର ଶିଷ୍ୟମାନେ ଗୁରୁମାନଙ୍କର ବଚନକୁ ମୁଖସ୍ଥ କରି ଦୂର ଦୂରାନ୍ତରେ ତାହାର ପ୍ରଚାର କରୁଥିଲେ । ପ୍ରାୟଶଃ ଏହି ବିଷୟ ଗୁଡିକ ଗଳ୍ପ ବା ଦୀର୍ଘ କବିତା ଆକାରରେ ଶିକ୍ଷା ଦିଆ ଯାଉଥିଲା । ଏସବୁକୁ

ବର୍ତ୍ତମାନ ପୁରଣ କୁହାଯାଏ । ଏହି କବିତା କେବଳ ମନେ ରଖିବା ପାଇଁ ସହଜ ହେଲା ନାହିଁ, ଶୁଣିବା ପାଇଁ ମଧ୍ୟ ତୃପ୍ତି ପ୍ରଦ ହେଲା ।

ଏହି ଭଳି ଭାବରେ ଆମମାନଙ୍କର ବେଦ, ଗୀତା ଓ ରାମାୟଣ ଏବଂ ପ୍ରାୟ ସମସ୍ତ ପ୍ରାଚୀନ ସାହିତ୍ୟ ସୁରକ୍ଷିତ ହୋଇଥିଲା ଏବଂ ପୁରୁଷ ପରେ ପୁରୁଷ ଶହ ଶହ ବର୍ଷ ପରେ ଲିଖିତ ଆକାର ଧାରଣ କଲା । ଏହି ଭଳି ଭାବରେ ବୁଦ୍ଧ ଓ ମହାବୀରଙ୍କର ପ୍ରଚାରିତ ଧର୍ମ ସମଗ୍ର ଭାରତ ବର୍ଷରେ ବ୍ୟାପି ଥିଲା ଏବଂ ବୌଦ୍ଧଧର୍ମ ସୁଦୂର ଚୀନ, ଜାପାନ ଓ ମଧ୍ୟ ଏସିଆରେ ପ୍ରବେଶ କରିଥିଲା ।

ଏହି ଭଳି ଭାବରେ ଆଜି ମଧ୍ୟ ପ୍ରବଚନମାନ ପ୍ରଚାରିତ ହୁଏ, ବିଶେଷତଃ ପଲ୍ଲୀ ଅଞ୍ଚଳମାନଙ୍କରେ । ରାମାୟଣ, ଗୀତା ଏବଂ ମହାଭାରତର ଗଳ୍ପମାନ ଏବେ ମଧ୍ୟ କୁଲଭାଟମାନଙ୍କ ଦ୍ୱାରା ସମଗ୍ର ଦେଶରେ ଆବୃତ୍ତି କରାଯାଏ ।

ଭାରତରେ ମୌଖିକ ଆବୃତ୍ତି

ଏବେ ମଧ୍ୟ ଆମର ଭ୍ରାମ୍ୟମାଣ ଗଳ୍ପକାରମାନେ ଅଛନ୍ତି । ବାସ୍ତବରେ ଆଜି ମଧ୍ୟ ଆମ ଦେଶରେ ତଥା ଏସିଆର ଅନ୍ୟ ଅଞ୍ଚଳ ଓ ଆଫ୍ରିକାରେ ଏପରି ଲୋକ ଅଛନ୍ତି, ଯେଉଁମାନେ ଲେଖା ଉପରେ ନିର୍ଭର କରନ୍ତି ନାହିଁ, (ଯେଉଁମାନଙ୍କର ବାସ୍ତବରେ ଲେଖିବା ପାଇଁ ଅକ୍ଷର ନାହିଁ) ସେମାନଙ୍କର ଋତୁର୍ଯ୍ୟ, ସେମାନଙ୍କର ଧାରଣା, ସେମାନଙ୍କର ସଂସ୍କୃତି, ସେମାନଙ୍କର ଆଇନ୍, ସେମାନଙ୍କର ଚଳଣି, ସେମାନଙ୍କର ବିଶ୍ୱାସ ଓ ସେମାନଙ୍କର କାହାଣୀ ତାଙ୍କର ପୂର୍ବପୁରୁଷମାନେ ଯାହା ଦେଇଯାଇଛନ୍ତି, ତାହା ରକ୍ଷା କରିବା ପାଇଁ ବର୍ତ୍ତମାନ ମଧ୍ୟ ଏହିଭଳି ମୌଖିକ ଆବୃତ୍ତି ଉପରେ ନିର୍ଭର କରନ୍ତି । କିନ୍ତୁ ଏହି ପରିସ୍ଥିତି ଅତି କ୍ଷିପ୍ର ଗତିରେ ପରିବର୍ତ୍ତିତ ହୋଇଯାଉଛି ।

ଏବେ ମଧ୍ୟ ଆମ୍ଭମାନଙ୍କର ଭ୍ରାମ୍ୟମାଣ ବୃନ୍ଦ ଦଳ ଅଛନ୍ତି



# ଲିଖିତ ଗ୍ରନ୍ଥ

ଲିଖନ ପ୍ରଣାଳୀ ବିକାଶ ଲାଭ କଲା-ପରେ ପ୍ରଚାର କାର୍ଯ୍ୟ ସହଜତର ହେଲା। ଲୋକେ ଯାହା କହିବା ବା ଶୁଣାଇବା ଆବଶ୍ୟକ କଲେ ତାହା ସେମାନେ ନିଜେ ଲେଖିଲେ ବା ଅନ୍ୟମାନଙ୍କ ଦ୍ୱାରା ଲେଖାଇ ନେଲେ। ଏହିଭଳି ଭାବରେ ତାହା ଭବିଷ୍ୟତ ପାଇଁ ରକ୍ଷିତ ହୋଇ ଜଣକ ପାଖରୁ ଜଣକୁ, ସ୍ଥାନରୁ ସ୍ଥାନକୁ ପ୍ରସାରିତ ହେଲା । ମାତ୍ର ସମସ୍ୟା ହେଲା ଯାହା ଉପରେ ଲେଖା-ଗଲେ ହାତରୁ ହାତକୁ ଯାଇପାରିବ ସେହି ପଦାର୍ଥ ଯଥେଷ୍ଟ ନ ଥିଲା । ପୃଥିବୀର ଅଧିକାଂଶ ଅଞ୍ଚଳରେ କାଗଜ ଏତେବେଳେ ଆବିଷ୍କୃତ ହୋଇ ନ ଥିଲା ।

ଯାହା ଥରେ ଲେଖା ଯାଇପାରିଲା ତାହା ଥରକୁ ଥର ନକଲ କରାଯାଇ ପାରିଲା । ଏକ ଲେଖା ଭାରତର ବିଭିନ୍ନ ଅଞ୍ଚଳକୁ ବ୍ୟାପ୍ତ ହେବାର ପ୍ରାଚୀନତମ ଦୃଷ୍ଟାନ୍ତ ହେଉଛି, ଅଶୋକଙ୍କ ଅନୁ-ଶାସନ । ଏହି ଅନୁଶାସନମାନ ପଥର ଉପରେ ବା ସ୍ତମ୍ଭ ଉପରେ ଅନେକ ସ୍ଥାନରେ ଖୋଦିତ ହୋଇଥିଲା ।



ଗୋଟିଏ ଅଶୋକସ୍ତମ୍ଭ । ସ୍ତମ୍ଭର ନିମ୍ନ ଭୂଗସ୍ଥ ଭାଗରେ ସଂରକ୍ଷଣ ଉଦ୍ଦେଶ୍ୟରେ ପରେ ଘେରା ଯାଇଥିବା ଲୁହା ବାଡ ଦ୍ୱାରା ଅନୁଶାସନ ଅଛି ।

ପଥର ଗାତ୍ରରେ ଖୋଦିତ ଅଶୋକ ଅନୁଶାସନର ଏକ ଅଂଶ



ଦଶୀତ୍ର ଜାଗଧ୍ୟ ଶତାବ୍ଦୀରେ ସଂରକ୍ଷିତ ତମ୍ବାପଟା ଲେଖା । କୁଣ୍ଡଳୀ ଫରମଗରେ ବନ୍ଧେଇ ବହି ଓ ସେହି ପ୍ରକାରେ ବନ୍ଧେଇ ତାମ୍ର ଫଟ ଲକ୍ଷ୍ୟକର ।





ତମ୍ବା ଆବିଷ୍କୃତ ହେବା ପରେ ଗୁରୁତ୍ୱପୂର୍ଣ୍ଣ ବିଷୟମାନ ତମ୍ବା-ପଟାରେ ଖୋଦନ କରି ମୁଦିଆ ଦ୍ୱାରା ସେଗୁଡ଼ିକୁ ଏକତ୍ର ରଖାଗଲା—ଆଧୁନିକ କୁଣ୍ଡଳୀ ପରମ୍ପରାରେ ବନ୍ଧେଇ ବହି ଭଳି । ତମ୍ବାପଟାରେ ଉଭୟ ପାଖରେ ଖୋଦନ କରିବା ମଧ୍ୟ ସମ୍ଭବ ହେଲା ।

କିନ୍ତୁ ପଥର ବା ଧାତୁ ପଟା ଉପରେ ଖୋଦନ କରିବା ସହଜ ନୁହେଁ । ପଥର ଦେହରେ କିମ୍ବା ଧାତବ ପଟା ଉପରେ ଖୋଦେଇ କାମ କେବଳ ବିଶେଷ ଦକ୍ଷ ଶିଳ୍ପୀମାନଙ୍କ ଦ୍ୱାରା ସମ୍ଭବ । କାଳି ବା ରଙ୍ଗ ପଥର ବା ଧାତବ ପଟା ଉପରେ ରହେ ନାହିଁ ଏବଂ ଅତିଶୀଘ୍ର ପୋଛି ହୋଇ-ଯାଏ ବା ଧୋଇ ହୋଇଯାଏ । କୋମଳ ମାଟିଫଳକ ଉପରେ ଗୋଜିଆ ଲେଖନିରେ ଲେଖିବା ସହଜତର । ଲେଖା ହେବା ପରେ ମାଟିଫଳକକୁ ଚୁଲି ଉପରେ ସେକି କଠିନ କରି ଲେଖାକୁ ସ୍ଥାୟୀ କରାଯାଏ । ଏହି ଭଳି ସମୁଦାୟ ଗ୍ରନ୍ଥକୁ ଲେଖାଯାଇ ସଂରକ୍ଷିତ ହେଉଥିଲା । ଇରାକର ଟାଇଗ୍ରୀସ୍ ଓ ଇଉଫ୍ରେଟିସ୍ ନଦୀ ମଧ୍ୟସ୍ଥ ଉପତ୍ୟକାରେ ଏହି ଭଳି ୩୦,୦୦୦ ମାଟି-ଫଳକ ଥିବା ଏକ ପାଠାଗାର ଆବିଷ୍କୃତ ହୋଇଛି । ବହିର ପୃଷ୍ଠା ଭଳି କ୍ରମିକ ସଂଖ୍ୟାସହ ବହୁ ମାଟିଫଳକ ଦେଖାଯାଇଛି । ଆସୁର୍ବାନିପାଲ ନାମକ ଜଣେ ରାଜା ଏହି ପାଠାଗାର ପ୍ରତିଷ୍ଠା କରିଥିଲେ । ସେ ପ୍ରାୟ ୨୬୦୦ ବର୍ଷ ପୂର୍ବେ ରାଜତ୍ୱ କରୁଥିଲେ ।

କିନ୍ତୁ ମାଟି ଫଳକଗୁଡ଼ିକ ବ୍ୟବହାର କରିବା ଉଭୟ ଲେଖକ ବା ପାଠକ ପାଇଁ ସୁବିଧାଜନକ ନୁହେଁ । ତା'ଛଡ଼ା ଶହ ଶହ ମାଟିଫଳକକୁ ତୁମ ଟେବୁଲ ଉପରେ ରଖିବା ବା ସ୍କୁଲକୁ ଧରିଯିବା କି କଷ୍ଟକର ଚିନ୍ତା କର । ମାତ୍ର ଭାରତରେ ପତ୍ର ଉପରେ, ଛାଲି ଉପରେ, ଛାଲ ଉପରେ କିମ୍ବା କନା ଉପରେ ଲେଖାଯାଇ ଏ ଅସୁବିଧା ଦୂର କରାଯାଇ ପାରିଥିଲା । କନା ଉପରେ କାଳି ଛତରେଇଯାଏ । ଯଦି ଶୀଘ୍ର ଶୀଘ୍ର ଶୁଖିଯିବା କନା ବ୍ୟବହାର କରା ନ ଯାଏ, ତାହା ଉପରେ ଲେଖା ମଧ୍ୟ ସହଜ ନୁହେଁ ।

କାଗଜ ଯଥେଷ୍ଟ ମିଳିବା ପର୍ଯ୍ୟନ୍ତ ଭାରତରେ ଶୁଖିଲା ତାଳପତ୍ର ଲେଖିବା ପାଇଁ ଓ ଗ୍ରନ୍ଥର ନକଲ ବାହାର କରିବା ପାଇଁ ବ୍ୟବହାର କରାଯାଉଥିଲା । ଚାରି ପାଞ୍ଚ ଶହ ବର୍ଷ ପୂର୍ବେ କାଗଜ ମିଳୁଥିଲେ ମଧ୍ୟ ତାଳପତ୍ରରେ ଗ୍ରନ୍ଥର ନକଲ ବାହାର କରାଯାଉଥିଲା । ଏଭଳି ତାଳପତ୍ର

ଗ୍ରନ୍ଥ ବହୁ ସଂଖ୍ୟାରେ ଆମର ସଂଗ୍ରହାଳୟ ଓ ପାଠାଗାରମାନଙ୍କରେ ସଂରକ୍ଷିତ ହୋଇଛି । ଘରୋଇ ଭାବରେ ମଧ୍ୟ ଏଭଳି ସଂଗ୍ରହ ଦେଖାଯାଏ ।

ଖ୍ରୀ: ପୂ: ପ୍ରାୟ ୨୦୦୦ ବର୍ଷ ତଳର ଇରାକ୍‌ରେ ମିଳିଥିବା
ମାଟିର ଫଳକ ।



ଲେଖାରେ ତାଳପତ୍ର ବ୍ୟବହାର ଦ୍ୱାରା ଗ୍ରନ୍ଥଗୁଡିକ ପୂର୍ବାପେକ୍ଷା ଅଧିକ ଲୋକଙ୍କୁ ମିଳିପାରିଲା ଏବଂ ସୁରକ୍ଷା ମଧ୍ୟ କରାଯାଇ ପାରିଲା । ତଥାପି ଏହାର ବ୍ୟାପକତା ଅତି ସୀମାବଦ୍ଧ ଥିଲା । ଅଧିକା ଖଣ୍ଡିଏ ତାଳପତ୍ର ଗ୍ରନ୍ଥ ବହୁ ଶ୍ରମ ସ୍ୱୀକାର କରି ହାତରେ ଲେଖା ଯାଉଥିବାରୁ ତାହା ଦୁର୍ଲ୍ଲଭ ଓ ବ୍ୟୟ ସାପେକ୍ଷ ହେଉଥିଲା । କାଗଜ କ୍ରମେ ଅଧିକ ମିଳିଲେ ମଧ୍ୟ କାଗଜ ଉପରେ ହାତରେ ଲେଖି ନକଲ କରିବା କଷ୍ଟକର ହେଉଥିବାରୁ ଉପରୋକ୍ତ ଅସୁବିଧା ଦୂର ହୋଇ ପାରିଲାନାହିଁ ।

ବହି ମିଳିବା କଷ୍ଟକର ହେଉଥିଲା, ତେଣୁ ସାକ୍ଷରତା (ପଠନ ଶିକ୍ଷା) ପ୍ରତି ଅଧିକ ଲୋକଙ୍କର ଆଗ୍ରହ ନ ଥିଲା । ପଠନ ଶିକ୍ଷାଲବ୍ଧର ସୁଯୋଗ ବିଶେଷ ନ ଥିବାରୁ କିଛି ଶିକ୍ଷା ପାଇଲେ ମଧ୍ୟ ଅଭ୍ୟାସ ଅଭାବରୁ ତାହା ପାଶୋର ଯାଉଥିଲା । ଏଭଳି ଲୋକେ ସେହି ପୂର୍ବ ଭଳି ମୁଖର ଭାଷା ଉପରେ ହିଁ ନିର୍ଭର କରି ତାହାଙ୍କର ଜ୍ଞାନ ଓ ବୌଦ୍ଧିକ ବିଚକ୍ଷଣତାର ପ୍ରସାର କରୁଥିଲେ ।

ଦିଲ୍ଲୀ ଜାତୀୟ ସଂଗ୍ରହାଳୟରେ ତାଳପତ୍ର ଗ୍ରନ୍ଥ । ତଳ ଗ୍ରନ୍ଥଟି ପାଠ କରିବା ପାଇଁ ଖୋଲା ଯାଇଛି । ଏ ଗ୍ରନ୍ଥ ବନ୍ଧେଇରେ ଯେଉଁ ପ୍ରଣାଳୀ ବ୍ୟବହୃତ ହୋଇଛି ଏବଂ ତାହାକୁ ବନ୍ଦ କରିଯାଇ ରଖାଯାଇଛି ତାହା ଉପର ଚିତ୍ରରେ ଲକ୍ଷ୍ୟକର ।









ଉପର ବାମ ପଟେ—ପ୍ରାଚୀନ ମିଶରରେ ପାପିରସ ଲେଖାର ଉପକରଣ ଥିଲା ।

ଉପର ଦକ୍ଷିଣ ପଟେ—ନୂଆ ଗ୍ରନ୍ଥ ରଚନାରେ ଶ୍ରୁତ ଲେଖନକାରୀ ଗ୍ରୀସ୍ ବା ରୋମର ଜଣେ କ୍ରୀତଦାସର କଳ୍ପିତ ଚିତ୍ର ।

ତଳ ବାମ ପଟେ—ଭାରତରେ ତାଳପତ୍ରର ବ୍ୟବହାର ।

ତଳ ଦକ୍ଷିଣ—ମୁଦ୍ରଣ ପ୍ରକ୍ରିୟା ପ୍ରଚଳିତ ହେବା ପୂର୍ବେ ୟୁରୋପରେ ଧର୍ମାନୁଷ୍ଠାନ ଅନ୍ତର୍ଭୁକ୍ତ ସନ୍ଥମାନେ ଗ୍ରନ୍ଥ ନକଲ କରିବା କାର୍ଯ୍ୟ ପ୍ରଧାନତଃ କରୁଥିଲେ ।

# ପାପିରସ୍

ପ୍ରାୟ ପାଞ୍ଚ ବା ଛଅ ହଜାର ବର୍ଷ ପୂର୍ବରୁ ମିଶରୀୟମାନେ ଏକ ପ୍ରକାର ଘାସ ଜାତୀୟ ଗଛର କାଣ୍ଡରୁ କାଗଜ ବାହାର କରିବା ପ୍ରଣାଳୀ ଉଦ୍‌ଭାବନ କରିଥିଲେ । ଏ ଗଛ ଗୁଡ଼ିକ ନୀଳନଦୀ କୂଳର ସନ୍ତସନ୍ତିଆ ସ୍ଥାନରେ ଜାତ ହେଉଥିଲା । ଏ ଗଛର ନାମ ପାପିରସ୍ ଏବଂ ଏହି ନାମରୁ ଇଂରାଜୀରେ 'ପେପର୍' ଶବ୍ଦ ଗଠିତ ହୋଇଛି ।

ପାପିରସ୍ ବକଳାରୁ ଲେଖିବା କାଗଜ ଫର୍ଦ୍ଦ କରିବା ପାଇଁ ଏହି କାଣ୍ଡକୁ ସରୁ ଛୁଞ୍ଚିରେ ଲମ୍ବଲମ୍ବା ଚିରା ଯାଉଥିଲା । ତା'ପରେ ଲମ୍ବା ବକଳା ଖଣ୍ଡଗୁଡ଼ିକୁ ପାଖକୁ ପାଖ ଚଟାଳିଆ ପଥର ଉପରେ ରଖି ତା' ଉପରେ ଅଠାଳିଆ ଦ୍ରବଣ ବୋଳା ଯାଉଥିଲା । ଏହି ପ୍ରଥମ ପରସ୍ତ ଉପରେ ଓସାରବାଗରେ ଆଉ ଏକ ପରସ୍ତ ସେହିଭଳି କରି ଉଭୟ ପରସ୍ତକୁ ଚାପି ଦିଆଯାଇ ଶୁଖାଇ ଦିଆଯାଉଥିଲା ଏବଂ ତାକୁ ପଥର ଖଣ୍ଡ, ହାତ ବା ଶାମୁକା ଖୋଳରେ ଘଷି ଚିକ୍କଣ କରାଯାଉଥିଲା ।

ପ୍ରାଚୀନ ମିଶରରେ ପାପିରସ୍ [illegible]



ମିଶର ଦେଶରୁ ପାପିରସ୍ କାଗଜ ଭୂମଧ୍ୟ ସାଗରୀୟ ଦେଶ ତଥା କେତେକ ଦୂର ଦେଶମାନଙ୍କୁ ରପ୍ତାନୀ ମଧ୍ୟ କରାଯାଉଥିଲା । ମାତ୍ର ରପ୍ତାନୀ ପରିମାଣ ଅତି ଅଳ୍ପ ଥିଲା ଏବଂ ସମୟ ସମୟରେ ରପ୍ତାନୀ ମଧ୍ୟ ନିଷେଧ କରି ଦିଆଯାଉଥିଲା । ଇଉରୋପ ଓ ଆରବ ଦେଶମାନଙ୍କରେ ଏହାର ବିକଳ୍ପ ଭାବରେ ପାର୍ଚମେଣ୍ଟ (ଚେମେଡା କାଗଜ) ପ୍ରଚଳିତ ହୋଇଥିଲା । ଏହା ପ୍ରାଣୀର ଛାଲକୁ ବିଶେଷ ପ୍ରକ୍ରିୟାରେ ପ୍ରସ୍ତୁତ କରି ତାହା ଉପରେ ଲେଖା ଯାଉଥିଲା । ପାର୍ଚମେଣ୍ଟ ବହୁକାଳ ସ୍ଥାୟୀ ହୁଏ, ଏପରିକି ପ୍ରାଚୀନ କାଳରେ ଏହି ପାର୍ଚମେଣ୍ଟରେ ଲିଖିତ ରୋଲ (ମୋଡା) ହଜାରେ ବା, ଅଧିକ ବର୍ଷ ସ୍ଥାୟୀ ହୋଇ ପାରିଛି । ଇସ୍ରାଏଲର



ଦକ୍ଷୀର ଏକ ସାଇନାଗଗର (ଜୀଉମାନଙ୍କ ପୂଜା ମନ୍ଦିର) ଏକ ଆଧୁନିକ ପାର୍ଚମେଣ୍ଟର ମୋଡା । ଉଇକୋଟୀର ହିବ୍ରୁ ଭାଷାରେ ଲିଖିତ ବାଇବେଲର ଅଇନ ଧର୍ମ-ଗ୍ରନ୍ଥ

ମରୁସାଗର କୂଳରେ ପ୍ରାଚୀନ ହିବ୍ରୁ ଭାଷାରେ (ଜୀଉମାନଙ୍କ ପବିତ୍ର ଭାଷା) ଏହି ପାର୍ଚମେଣ୍ଟ ଉପରେ ଲିଖିତ ବାଇବେଲର ଛିନ୍ନ ଅଂଶ ୧୯୪୭ ମସିହାରେ ଆବିଷ୍କୃତ ହୋଇଛି । ପ୍ରତ୍ନତତ୍ତ୍ୱବିତ୍‌ମାନେ ବିଶ୍ୱାସ କରନ୍ତି ଯେ ପାର୍ଚମେଣ୍ଟର ଏହି ଛିନ୍ନାଂଶ ପ୍ରାୟ ଦୁଇ ହଜାର ବର୍ଷ ତଳର ହେବ ।

ପ୍ରାଚୀନ ଗ୍ରୀସ୍ ଓ ରୋମ୍‌ର ଗ୍ରନ୍ଥମାନ ଏହି ପାପିରସ୍ ବା ପର୍ଚମେଣ୍ଟର ରୋଲ ଆକାର ବିଶିଷ୍ଟ । ଛାତ୍ରମାନେ ଶ୍ରୁତଲିଖନ କଲାଭଳି ମୂଳ ଗ୍ରନ୍ଥମାନଙ୍କର ଅନେକ ନକଲ କେତେକ ଶିକ୍ଷିତ କ୍ରୀତଦାସଙ୍କୁ ଏକାବେଳେ ଡାକି ଦିଆଯାଇ ପ୍ରସ୍ତୁତ କରାଯାଉଥିଲା । ମହମର ଫଳକ ବ୍ୟବହାର କରି ତା'ଉପରେ ଲେଖନ ଦ୍ୱାରା ମଧ୍ୟ ଅକ୍ଷର ଖୋଳାଯାଉଥିଲା । ଚିତ୍ରରେ ଦେଖା ଦେଲା ପରି ସମୟ ସମୟରେ ଏଗୁଡ଼ିକୁ ବହିର ପୃଷ୍ଠା ଭଳି ଯୋଡ଼ି ଦିଆଯାଉଥିଲା ।

ମୋଗଲ ସମ୍ରାଟଙ୍କ ଆଦେଶ କ୍ରମେ ପାର୍ସୀ ଭାଷାରେ ଲିଖିତ ମହାଭାରତ ଏବ ରାମାୟଣ



ତୁମେ ୧୪ ଓ ୧୬ ପୃଷ୍ଠାର ଚିତ୍ରରୁ ଦେଖିଲ ଯେ ଏହି ଖେଳ ଉଭୟ ପ୍ରାନ୍ତ ଦଣ୍ଡ ସହିତ ଲାଗି ରହିଛି ଏବଂ ଦଣ୍ଡ ଉପରେ ତାହା ଗୁଡ଼ାଇ ହୋଇ ରହିଛି । ଏ ଗ୍ରନ୍ଥ ପଢ଼ିବାବେଳେ ତୁମକୁ ତାହାର ପୃଷ୍ଠା ଓଲଟାଇବାକୁ ହେବନାହିଁ; କେବଳ ଗୋଟିଏ ଦଣ୍ଡରୁ ଅନ୍ୟ ଦଣ୍ଡକୁ ଗୁଡ଼ାଇ ନେବାକୁ ହେବ ।

## କାଗଜ

ବହିକୁ ଆଜି ଆମେ ଯେଉଁ ପ୍ରକାରରେ ଦେଖୁଛୁ ତାହା କାଗଜ ଓ ମୁଦ୍ରଣ ପ୍ରଣାଳୀର ଉଦ୍‌ଭବନ ଯୋଗୁ ହିଁ ସମ୍ଭବ ହୋଇଛି । ମାତ୍ର ଏହା ଆମର ପଡ଼ୋଶୀ ଚୀନା ଲୋକଙ୍କୁ ଦୁଇ ହଜାରରୁ ଅଧିକ ବର୍ଷ ଆଗରୁ ଜଣାଥିଲା ।

ପ୍ରାଚୀନ ଚୀନାମାନଙ୍କ କାଗଜ ପ୍ରାୟଶଃ ଆଧୁନିକ କାଗଜ ଭଳି, ଶୁଖିଲା କାଠର କିମ୍ବା କନାର ମଣ୍ଡରୁ ପ୍ରସ୍ତୁତ ମସୃଣ କରାଯିବା



ଫର୍ଦ୍ଦ । ନଡା ଓ ବାଉଁଶର ମଣ୍ଡ ମଧ୍ୟ କାଗଜ ତିଆରିର ମୂଳ ପଦାର୍ଥ । ଏହି କଞ୍ଚା ମାଲକୁ ପାଣିରେ ବତୁରାଇ କଳରେ କୁଟା ଯାଏ ବା ରାସାୟନିକ ପ୍ରକ୍ରିୟାରେ ବା ଉଭୟ ପ୍ରଣାଳୀରେ ମଣ୍ଡ କରାଯାଏ । ପ୍ରାଚୀନ ଚୀନାମାନେ ଏହା ଯାନ୍ତ୍ରିକ ପ୍ରକ୍ରିୟାରେ କରୁଥିଲେ । କୁଟିବା ଏବଂ ରାସାୟନିକ ପ୍ରୟୋଗ କରିବାରେ କାଠ ଓ କପାର ତନ୍ତୁକୁ ଅଲଗା କରି ଭାଙ୍ଗି କ୍ଷୁଦ୍ର କ୍ଷୁଦ୍ର କରାଯାଏ । ଗୋଟିଏ ବଡ ଟ୍ରେ (ଚାଲୁଣୀ) ଯାହାର ତଳ ପାଖ ସୂକ୍ଷ୍ମ କନାରେ ତିଆରି, ତାହାକୁ ମଣ୍ଡରେ ବୁଡାଇ ଉଠାଇ ଆଣିଲେ ପାଣି ଗଳିଯାଇ କନା ଉପରେ ମଣ୍ଡର ଗୋଟିଏ ସ୍ତର କନା ଉପରେ ରହିଯାଏ । ଏହି ସ୍ତରକୁ ଚାପଦେଇ ଓ ଶୁଖାଇ ଏକ ଫର୍ଦ୍ଦ କାଗଜ କରାଯାଏ । କାଗଜ ତିଆରିର କୌଶଳ ଖ୍ରୀଷ୍ଟଜନ୍ମର ପ୍ରାୟ ସାତଶହ ବର୍ଷ ପୂର୍ବେ ଭାରତରେ ପ୍ରସାର ଲାଭ କରିଥିଲା ବୋଲି ବିଶ୍ୱାସ କରାଯାଏ । ଅଷ୍ଟମ ଶତାବ୍ଦୀରେ ଏହା ପଶ୍ଚିମ ଦିଗକୁ ପ୍ରସାରିତ ହେଲା ।

ଏହି ତିନିଟି ଛବିରେ ଚୀନାମାନଙ୍କ କାଗଜ ତିଆରିର ପ୍ରଣାଳୀ ଦେଖାଯାଇଛି । ଏହିସବୁ ୧୬୩୭ ଖ୍ରୀଷ୍ଟାବ୍ଦରେ ଚୀନ୍‌ରେ ମୁଦ୍ରିତ ଏକ ବହିରୁ ନିଆଯାଇଛି



ଆରବର ଆକ୍ରମଣକାରୀମାନେ ଚୀନର କାଗଜ ଶିଳ୍ପୀମାନଙ୍କୁ ଧରି ଆଣିଥିଲେ । ସେମାନଙ୍କ ଦ୍ୱାରା ଏହି ଶିଳ୍ପ ଆରବ ଦେଶମାନଙ୍କରେ ପ୍ରସାରିତ ହେଲା ଏବଂ ଆରବୀୟମାନେ ଦ୍ୱାଦଶ ଶତାବ୍ଦୀରେ ଏହି ଶିଳ୍ପକୁ ଇଉରୋପକୁ ନେଇଥିଲେ । ଇଉରୋପରେ ପ୍ରତିଷ୍ଠିତ ହେବା ପରେ ଏ ଶିଳ୍ପ ଦ୍ରୁତ ଗତିରେ ଉନ୍ନତି ଲାଭ କଲା । ଅନ୍ୟ ସବୁ ଶିଳ୍ପ ଭଳି କାଗଜ ଶିଳ୍ପ ମଧ୍ୟ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ତୀବ୍ର ଗତିରେ ଯାନ୍ତ୍ରିକ ପ୍ରକ୍ରିୟାରେ ତିଆରି ହେଲିଲା । ଶିଳ୍ପ ବିପ୍ଳବ ଯୋଗୁଁ କାଗଜର ଆବଶ୍ୟକତା ମଧ୍ୟ ଖୁବ୍ ବେଶି ବଢ଼ିଚାଲିଲା ।

ଗୋଟିଏ ଓରଗାଧୁ ଆଧୁନିକ କାଗଜ କଳ









ବାମ—ପ୍ରାଚୀନ ସିନ୍ଧୁ ସଭ୍ୟତାର ପ୍ରଧାନ ପୀଠ (ଖ୍ରୀ:ପୂ: ୨୦୦୦ ବର୍ଷ) ମହେଞ୍ଜୋଦାରୋରୁ ପ୍ରାପ୍ତ ବହୁ ମୋହର (ସିଲ୍) ମଧ୍ୟରୁ ଗୋଟିଏ
ଡାହାଣ—ଗୋଟିଏ ଖୋଦିତ କାଠ ବ୍ଲକ ଓ ତାହାର ଛାପା

# ମୁଦ୍ରଣ

ସିଲ୍ ଓ ବ୍ଲକରୁ ହାତରେ ଛାପିବା (ଶାଢ଼ୀ ଛପା ବର୍ତ୍ତମାନ ମଧ୍ୟ ଯେପରି କାଠ ଖୋଦେଇ ବ୍ଲକରୁ ଛାପା ହେଉଛି) ଗୋଟିଏ ପ୍ରାଚୀନ କଳା ବିଦ୍ୟା । ଜଣେ ନିପୁଣ କାଠ ଖୋଦେଇ କାରିଗର ଯିଏ ଶାଢ଼ୀର ଜଟିଳ ଚିତ୍ର ଦୁଇ ବା ତିନି ରଙ୍ଗରେ ଛାପା ହେବା ପାଇଁ ତିଆରି କରିପାରୁଛି ସେ ଗୋଟିଏ ଗୋଟିଏ ପୃଷ୍ଠାର ଚିତ୍ର ବା ଲେଖା ପାଇଁ ବ୍ଲକ ଖୋଳି–ଦେଇପାରେ । ମାତ୍ର ତାହା ଦର୍ପଣୀ ପ୍ରତିରୂପରେ ଲେଖାହେବାକୁ ହେବ, ଯେପରିକି ଛାପା ହୋଇ ପଡ଼ିଲା ବେଳେ ରବର ଷ୍ଟାମ୍ପ ପରି ତାହା ଠିକ୍ ପଢ଼ିହେବ । ଚୀନାମାନେ ଏହି ପ୍ରଣାଳୀରେ ପ୍ରାୟ ୧୮୦୦ ବର୍ଷ ପୂର୍ବରୁ ବହି ଛାପୁଥିଲେ । ଅନ୍ୟତ୍ର ଚିତ୍ରର ବ୍ଲକ୍ ଛାପା ଏବଂ କିଛି ପାଠ ଛାପାଯାଇଥିଲେ ମଧ୍ୟ ତାହା ବହୁ ଦିନ ପରେ ହୋଇଥିଲା ।

ଏଭଳି ଭାବରେ ବହିଟିଏ ଛାପିବା ପାଇଁ ଶହ ଶହ କାଠ ବ୍ଲକ ପ୍ରସ୍ତୁତ କରିବାକୁ ବହୁ ଅର୍ଥ ଓ ସମୟ ବ୍ୟୟ ଆବଶ୍ୟକ ହେଉଥିଲା । ଫଳରେ ଅଧିକ ସଂଖ୍ୟକ ବହି ଛାପା ହୋଇ ପାରୁନଥିଲା । ତେଣୁ ଏତେବେଳେ ମଧ୍ୟ ହାତରେ ନକଲ କରିବାକୁ ଲୋକେ ପସନ୍ଦ କରୁଥିଲେ । ଆଉ ମଧ୍ୟ କାଠ ବ୍ଲକରେ ଛୋଟ ଅକ୍ଷର ଖୋଦେଇ ଅତି କଷ୍ଟକର କାର୍ଯ୍ୟ । ଅକ୍ଷର ବଡ଼ କରିବାକୁ ହେଲେ ଅଧିକ ସଂଖ୍ୟକ ବ୍ଲକରେ ଖୋଦେଇ ଦରକାର । ଅଳ୍ପ ଅକ୍ଷରଥିବା ଧାଡ଼ି ଏବଂ ଅଳ୍ପ ଧାଡ଼ି ଥିବା ପୃଷ୍ଠାର ବହି ମଧ୍ୟ ପଢ଼ିବା ପାଇଁ ବିରକ୍ତିକର ।

ବର୍ତ୍ତମାନ ଏକ ନୂଆ ଚିନ୍ତା ଏ କ୍ଷେତ୍ରରେ ବହୁ ପରିବର୍ତ୍ତନ ଘଟାଇଲା, ତାହା ହେଉଛି ସମୁଦାୟ ପୃଷ୍ଠା ଖୋଦେଇ ନକରି ସ୍ୱତନ୍ତ୍ର ସ୍ୱତନ୍ତ୍ର ଅକ୍ଷର( ଟାଇପ୍) ଖୋଦେଇ କରିବା; ଟାଇପ୍ ଗୁଡିକୁ ମଝିରେ ଠିକ ଭାବେ ସ୍ପେସ୍ ଓ ଉଦ୍ଧୃତଚିହ୍ନ ଝଞ୍ଜି ବାନ୍ଧ, ଧାଡି ଓ ପୃଷ୍ଠା ସଜାଇ ଦେବା । ଏହି ପ୍ରଣାଳୀକୁ ଆଜିର ମୁଦ୍ରାକର କହନ୍ତି ଅକ୍ଷର କମ୍ପୋଜିଙ୍ଗ । କମ୍ପୋଜ ହୋଇଥିବା ଅକ୍ଷରକୁ ଛାପା ପରେ ଡିଷ୍ଟ୍ରିବ୍ୟୁଟ (ପ୍ରତ୍ୟେକକୁ ତାହା ପାଇଁ ଉଦ୍ଦିଷ୍ଟ ଖୋପରେ ପକେଇବା) କାମ କରାଯାଏ । ଯେ ଟାଇପ୍ ମୁଣ୍ଡା ହୋଇଯିବା ପର୍ଯ୍ୟନ୍ତ ସେଥିରେ ପୁଣି ପୁଣି ଅନ୍ୟ ବହି କମ୍ପୋଜ କରାଯାଇପାରେ ।



ଗୁଟେନ୍‌ବର୍ଗ ସ୍ମରଣ ବାଇବେଲ ପ୍ରକାଶନର ପାଞ୍ଚଶହତମ ବର୍ଷପାଳନ ଉପଲକ୍ଷେ ଜର୍ମାନୀରେ ୧୯୫୬ ରେ ପ୍ରସ୍ତୁତ ଡାକ ଟିକେଟର ପରିବର୍ଦ୍ଧିତ ରୂପ । ବିଶ୍ୱାସ କରାଯାଏ ଯେ ଏହା ଚଳମାନଧାତବ ଟାଇପ୍‌ରେ ଚୀନ୍ ବାହାରେ ମୁଦ୍ରିତ ସର୍ବ ପ୍ରଥମଗ୍ରନ୍ଥ

ଆଜି ଏ କଥା ଅତି ସହଜ ମନେହେଉଛି । କିନ୍ତୁ ଏହି କଳ୍ପନାକୁ କାର୍ଯ୍ୟକାରୀ କରିବା ପୂର୍ବରୁ ବହୁ ଅସୁବିଧା ଦୂର କରିବାକୁ ହୋଇଥିଲା ଏବଂ ବହୁ ସମସ୍ୟା ସମାଧାନ କରିବାକୁ ପଡିଥିଲା ।

ପୂର୍ବରୁ କୁହାଯାଇଛି ଯେ ବଡ ବ୍ଲକ ଉପରେ କ୍ଷୁଦ୍ର ଅକ୍ଷର ଖୋଳିବା ଅତି କଷ୍ଟକର ତେବେ ସେହି ଅକ୍ଷରକୁ ଛୋଟ କାଠଖଣ୍ଡର ଅଗରେ ଖୋଳିବା ପୁଣି କେତେ କଷ୍ଟକର ନ ହେବ ? ଆଉ ମଧ୍ୟ ଗୋଟିଏ ପୃଷ୍ଠା ପାଇଁ କେତେ ସଂଖ୍ୟକ ଅକ୍ଷର ଆବଶ୍ୟକ ହେବ, ଏହି ପୃଷ୍ଠାରେ ବ୍ୟବହୃତ, "ଅ" ଓ "କ" ଅକ୍ଷରକୁ ଗଣିଲେ ତୁମେ ଏହା ଧାରଣା କରିପାରିବ ।

ଏହିସବୁ ଅସୁବିଧା ସତ୍ତ୍ୱେ ସରଳ ଚୀନା ଲୋକମାନେ ହଜାରେ ବର୍ଷ ପୂର୍ବେ ପୋଡା ମାଟିରେ ଗୋଟିକିଆ ଟାଇପ୍ କରିଥିଲେ ଏବଂ ପରେ ଏଥିପାଇଁ କାଠ, ବ୍ରୁଞ୍ଜ, ଟିଣ ବ୍ୟବହାର କରିଥିଲେ । କିନ୍ତୁ ଏହାର ବ୍ୟବହାର ବହୁ ଅସୁବିଧା ମଧ୍ୟ ଦେଇ କରିବା କେଉଁଠି ହେଉଥିଲେ ମଧ୍ୟ ସାଧାରଣତଃ କାଠ ଖୋଦେଇ ବ୍ଲକ ଉପରେ ମୁଦ୍ରଣ ନିର୍ଭର କରୁଥିଲା ।

ଗୁଟେନ୍ ବର୍ଗଙ୍କ ବାଇବେଲର ଏକ ପୃଷ୍ଠା । ଧର୍ମଗ୍ରନ୍ଥ ଏବଂ ବୈଜ୍ଞାନିକ ଗ୍ରନ୍ଥରେ ବ୍ୟବହୃତ ହେଉଥିବା ପ୍ରାଚୀନ ଲାଟିନ୍ ଭାଷା

# ଗୋଟିକିଆ ଧାତବ ଟାଇପ୍

ପ୍ରାୟ ୧୪୫୦ ଖ୍ରୀ:ଅ: ବେଳକୁ ଜନ୍ ଗୁଟେନ୍‌ବର୍ଗ ନାମକ ଜଣେ ଜର୍ମାନ ବ୍ୟକ୍ତିଙ୍କ ବିଚକ୍ଷଣତା ତଥା ବିଜ୍ଞାନ ଏବଂ ଧାତୁ ଦ୍ରବ୍ୟରେ କାମ କରିବା କଳା ଏହି ସମସ୍ୟାର ସମାଧାନ କରିଥିଲା ।

ଗୁଟେନ୍‌ବର୍ଗ ଯାହା କଲେ ତାହା ହେଉଛି—ସେ କଠିନ ଇସ୍ପାତ ଶଳାକା ଉପରେ ପ୍ରତି ଅକ୍ଷରର ଦର୍ପଣୀ ପ୍ରତିରୂପ ଖୋଦେଇ କଲେ । ଏହାକୁ କୁହାଯାଏ ପଞ୍ଚ୍ ବା ଛେଣି କରିବା । ପ୍ରତ୍ୟେକ ଛେଣିକୁ ତମ୍ବା ବା ପିତଳ ପାତ ଉପରେ ରଖି ଓଜନିଆ ହାତୁଡିରେ ଜୋରରେ ବାଡେଇ ଅକ୍ଷରର ପ୍ରତିରୂପ ଉଠାଯାଏ । ଏହାକୁ କହନ୍ତି ମାଟ୍ରିକ୍ସ । ଏହି ମାଟ୍ରିକ୍ସକୁ ଏକ ଛାଞ୍ଚରେ ଖଞ୍ଜି ତା' ଉପରେ ତରଳ ସୀସା ଢଳାଯାଏ । ଢଳା ସୀସା ଥଣ୍ଡା ହେଲେ ଗୋଟିଏ ନିଦା ଦର୍ପଣୀ ଅକ୍ଷରର ଟାଇପ୍ (ଓଲଟା ଅକ୍ଷର) ବାହାରେ ।

ତୁମେ ଦେଖିବ ଯେ ଗୋଟିଏ ଛାଞ୍ଚରୁ ବହୁ ପରିମାଣ ଅକ୍ଷର (ଟାଇପ୍) ଢଳାଯାଇ ପାରେ ଏବଂ ଗୋଟିଏ ମାଟ୍ରିକ୍ସ ଥିଲେ ବହୁ ସଂଖ୍ୟକ ଛାଞ୍ଚ ତିଆରି କରି ଲୋକଙ୍କୁ ଯୋଗାଯାଇ ପାରେ । ମେଟାଲ ଟାଇପ୍ ଶବ୍ଦ ଧାଡିରେ କମ୍ପୋଜ କରାଯାଇ ପୃଷ୍ଠା ପୃଷ୍ଠା କରାଯାଏ । ତା'ପରେ ଛାପା ସରିଲେ ଡିଷ୍ଟ୍ରିବ୍ୟୁଟ୍ କରି ଦିଆଯାଏ । ଟାଇପ୍ ମୁଣ୍ଡା ହୋଇଯିବାଯାଏଁ ଏହା ଚାଲେ । ମୁଣ୍ଡା ଟାଇପ୍‌କୁ ତରଳାଇ ପୁଣି ଢଳେଇ କରାଯାଏ ।



# ମୁଦ୍ରଣ ଯନ୍ତ୍ର

କମ୍ପୋଜ ହୋଇଥିବା ଟାଇପ୍ ଛାପିବା ପାଇଁ ମେସିନ୍‌ର ବେଡ୍ ଉପରେ ତାହାକୁ କଷି କରି ଚାପି (ଟାଇପ୍ ଖସି ପଡି ମିଶି ନ ଯିବା ପାଇଁ) ରଖା ଯାଉଥିଲା । ଟାଇପ୍‌ର ମୁଣ୍ଡରେ କାଳି ଲଗାଇ କାଗଜ ଫର୍ଦ୍ଦ ସାବଧାନ ଭାବେ ଠିକ୍ ସ୍ଥାନରେ ରଖାଯାଉଥିଲା । ତା'ପରେ ଏକ ହସ୍ତ ଚାଳିତ କଳ ଦ୍ୱାରା ସମାନ ଭାବେ ଚାପି ଦିଆଯାଉଥିଲା ଏବଂ ଚାପ ବାହାର କରି ନେଇ କାଗଜ ବାହାର କରି ଶୁଖିବା ପାଇଁ ପାଖରେ ରଖାଯାଉଥିଲା । ଏ ପ୍ରଣାଳୀରେ ଫର୍ଦ୍ଦ ଆବଶ୍ୟକ ସଂଖ୍ୟାରେ ଛାପାଯାଉଥିଲା ।

ଗୁଟେନ୍‌ବର୍ଗଙ୍କ ସମୟରେ ବ୍ୟବହୃତ ମୁଦ୍ରଣ ଯନ୍ତ୍ର

ବର୍ତ୍ତମାନ ଆମେ ଜାଣିଲେ, ମୁଦ୍ରଣ ଯନ୍ତ୍ରକୁ ପ୍ରିଣ୍ଟିଂ ପ୍ରେସ କାହିଁକି କୁହାଯାଏ । କାଳିଲଗା ଟାଇପ୍ ଉପରେ କାଗଜକୁ ଚାପିବା (ପ୍ରେସ) ମୁଦ୍ରଣରେ ହେଲା ପ୍ରଧାନ ପ୍ରକ୍ରିୟା । ଗୁଟେନ୍‌ବର୍ଗଙ୍କ ସମୟଠାରୁ ମୁଦ୍ରଣ ପ୍ରକ୍ରିୟା କ୍ଷିପ୍ର ଭାବରେ ଅଗ୍ରଗତି କରିଛି । ଗୋଟିକ ପରେ ଗୋଟିଏ କରି କମ୍ପୋଜ ଓ ମୁଦ୍ରଣ କାର୍ଯ୍ୟରୁ ହସ୍ତଚାଳିତ ପ୍ରକ୍ରିୟା ଉଠିଯାଇଛି । ମେସିନ୍‌ମାନଙ୍କର ଗତି ବଢି ଯାଇଛି ଏବଂ ଉନ୍ନତ ମେସିନ୍ ଯୋଗୁଁ ମୁଦ୍ରଣରେ ବହୁ ଉନ୍ନତି ଘଟିଛି । ମେସିନ୍‌ର ଆକାର ବୃହତ୍ତର ହୋଇଛି ଏବଂ ବର୍ତ୍ତମାନ ଶିଳ୍ପୋନ୍ନତ ଦେଶମାନଙ୍କରେ ସୁବୃହତ୍, ଜଟିଳ ଯନ୍ତ୍ରମାନଙ୍କ ଦ୍ୱାରା ବିବିଧ ପ୍ରକାର ମୁଦ୍ରଣ ସଂକ୍ରାନ୍ତ କାର୍ଯ୍ୟ ହୋଇ ପାରୁଛି । ଉଦାହରଣ ସ୍ୱରୂପ—ଛାପାକଳରେ ବିଶାଳ କାଗଜ ରୋଲମାନ

ଏକ ପାଖରୁ ଲଗାଇଲେ ଅନ୍ୟ ପାଖରେ କାଗଜ ମଲାଟ ଲଗା ହୁଏ ବହି ବାହାରିପଡୁଛି । ଏଥିପାଇଁ ମନୁଷ୍ୟର ସହାୟତା ଆବଶ୍ୟକ ହେଉନାହିଁ । କେବଳ କମ୍ପୋଜ ପାଠର ପ୍ଲେଟ୍ ଠିକ୍ ଭାବେ ମେସିନ୍‌ରେ ଲଗାଯାଇ-ଥିବା ଆବଶ୍ୟକ । ଗତ ଦଶ ପନ୍ଦର ବର୍ଷର ଅଗ୍ରଗତି ଫଳରେ ଧାତବ ଟାଇପ୍ ବ୍ୟବହାରକୁ ମଧ୍ୟ ବାଦ୍ ଦିଆଯାଇ ପାରିଛି । ତଥାପି ନୂଆ ବହି ଛାପିବାରେ ଧାତବ ଟାଇପ୍‌ରୁ ମୁଦ୍ରଣ କ୍ରିୟା ଏକ ସାଧାରଣ ପ୍ରକ୍ରିୟା ହୋଇ ରହିଛି—ବିଶେଷତଃ ଆମ ଦେଶରେ ।

କିନ୍ତୁ ଆଜିକାଲି ବହି କିପରି ତିଆରି ହୁଏ ସେକଥା ଆଲୋଚନା କରିବା ପୂର୍ବରୁ ଆମେ ପୂର୍ବରୁ ବିଚାର କରି ଆସିଥିବା ଲେଖକ ଏବଂ ଗ୍ରନ୍ଥର ବହୁଳ ପ୍ରଚାର କଥା ପ୍ରଥମେ ଆଲୋଚନା କରିବା ।



ଏହିଭଳି କ୍ଷୁଦ୍ର ମୁଦ୍ରଣ ଯନ୍ତ୍ର ଭାରତର ଶହ ଶହ ପ୍ରେସରେ ଗତ ଷାଠିଏ ବର୍ଷ ହେଲା ଉତ୍ତମ ଭାବେ କାର୍ଯ୍ୟ ଚଳାଇ ଆସିଛନ୍ତି । ଗୋଡ଼ ସିଲେଇ କଳ ଭଳି ଏହି କଳକୁ ପାଦରେ ଚଳାଇବାକୁ ହେଉଥିବାରୁ ଏଗୁଡ଼ିକୁ ଟ୍ରେଡଲ୍ (ପଦଚାଳିତ) ମେସିନ୍ କୁହାଯାଏ । ସହରରେ ଦେଖାଯିବା କଳ ଭଳି କଳ ମାନ ଅଜି କାଲି ଇଲେକ୍ଟ୍ରିକ୍ ମୋଟର ଦ୍ୱାରା ଚଳା ଯାଉଛି ।

# ଲେଖକ, ପ୍ରକାଶକ ଓ କପିରାଇଟ୍

ଛାପା ଓ କାଗଜ ଯୋଗୁଁ କୌଣସି ବହିର ବହୁ ସଂଖ୍ୟକ କପି ଛାପିବାକୁ ଯେତେ କମ୍ ପରିଶ୍ରମ, କମ୍ ସମୟ ଲୋଡା ହେଉଛି ସେତିକି ସଂଖ୍ୟକ କପି ହାତରେ ଲେଖିବାଠାରୁ ତାହା ବହୁତ କମ୍ । କିନ୍ତୁ ଏହା ମୁଦ୍ରାଯନ୍ତ୍ର ଦ୍ୱାରା କେବଳ କରାଯାଇପାରେ । ମୁଦ୍ରାଯନ୍ତ୍ର ଓ ଉପକରଣ ବହୁ ବ୍ୟୟସାପେକ୍ଷ ଏବଂ ଏଥିରେ ବହୁ ଲୋକଙ୍କୁ କାମ କରିବାକୁ ହୁଏ । ଏଥିପାଇଁ କାଗଜ, ଅନ୍ୟାନ୍ୟ ଉପକରଣ ଏବଂ ବନ୍ଧେଇ ପାଇଁ ମଧ୍ୟ ଯଥେଷ୍ଟ ଅର୍ଥ ଆବଶ୍ୟକ । ବହି ଛାପିବା ପାଇଁ ଜଣେ ଲେଖକର ଧନ ଥାଇପାରେ କିନ୍ତୁ ବହି ବିକ୍ରି କରିବା କଷ୍ଟକର ଅଟେ ।

ଏହିଠାରେ ହିଁ ପ୍ରକାଶକ ଆସିଯାଏ । ଲେଖକମାନେ ସାଧାରଣତଃ କିଛି ଟଙ୍କା ପାଇ ପ୍ରକାଶକକୁ ତାଙ୍କ ଲେଖାକୁ ମୁଦ୍ରଣ ଓ ପ୍ରକାଶନ (ବହି ଆକାରରେ ବାହାର କରି ସାଧାରଣଙ୍କଠାରେ ପହଞ୍ଚାଇବା) ତଥା ବିକ୍ରୟ ସ୍ୱତ୍ୱାଧିକାର ଦେଇଥାନ୍ତି । କିଛି ଲାଭ ପାଇବା ଲକ୍ଷ୍ୟରେ ପ୍ରକାଶକ ଏହି ଦାୟିତ୍ୱ ନେଇଥାନ୍ତି । ପ୍ରକାଶକ ବହି ବିକ୍ରି କରି ଲାଭ କରିବା ଉଦ୍ଦେଶ୍ୟରେ ବହିର ମୁଦ୍ରଣରେ ଅର୍ଥବ୍ୟୟ କରୁଥିବାରୁ ସେ ଜଣେ ବ୍ୟବସାୟୀ । ଅନ୍ୟସବୁ ପଣ୍ୟଦ୍ରବ୍ୟର ନିର୍ମାତାମାନଙ୍କ ପରି ସେ ମଧ୍ୟ ଯେ କେବଳ ବହି ତିଆରି କରେ ତାହାନୁହେଁ, ତାହାର ପ୍ରଚାର ଓ ବିକ୍ରୟ ପାଇଁ ବ୍ୟବସ୍ଥା ମଧ୍ୟ କରେ ।

ଲେଖକ ପ୍ରକାଶକକୁ ବହି ପ୍ରକାଶ କରିବା ପାଇଁ ସତ୍ୱାଧିକାର ଦେବାକଥା ଉପରେ କୁହାଗଲା । ଏହାର ଅର୍ଥ, ସତ୍ୱାଧିକାରପ୍ରାପ୍ତ ପ୍ରକାଶକ କେବଳ ସେହି ଲେଖକଙ୍କ ବହିର କପିମାନ ପ୍ରସ୍ତୁତ କରି ଅନ୍ୟମାନଙ୍କୁ ପଢିବାକୁ ଯୋଗାଇବା ଅଧିକାର ଅଛି । ଲେଖକଙ୍କର ଏହି ଅଧିକାରକୁ ଆମଦେଶରେ ତଥା ଅନ୍ୟ ଦେଶମାନଙ୍କରେ ଆଇନ୍ ଦ୍ୱାରା ସୁରକ୍ଷିତ କରାଯାଇଛି । ଏହାକୁ 'କପିରାଇଟ୍' କୁହାଯାଏ ଏବଂ ଏହି ସତ୍ୱାଧିକାର ଲେଖକ ତାଙ୍କର ଜୀବନାବଧି ଏବଂ ଲେଖକଙ୍କ ମୃତ୍ୟୁ ପରେ ତାଙ୍କ ଉତ୍ତରାଧିକାରୀମାନେ ପଚାଶ ବର୍ଷ ଉପଭୋଗ କରନ୍ତି । ତାହା ପରେ ଯେକୌଣସି ବ୍ୟକ୍ତି ଏପରି ଲେଖକଙ୍କ ବହି କାହାରି ଅନୁମତି ଦରକାର ନକରି ବାହାର କରିପାରନ୍ତି । ଏହିପରି ଭାବରେ ରବୀନ୍ଦ୍ର



ସମ୍ମୁଖରେ କଳା ଅଫ୍‌ସେଟ୍‌ ଛପାମେସିନ୍‌ । ଏହା କ୍ରମାନ୍ୱୟରେ ଚାରୋଟି ରଙ୍ଗ ଛପିପାରେ । ଛବିରେ ଚାରିସେଟ୍‌ ରୋଲର ଦେଖାଯାଉଛି । କେତେକ ମେସିନ୍‌ ଉଭୟ ପିଠି ଏକ ସଙ୍ଗେ ଛପିପାରନ୍ତି । ଏଭଳି ମେସିନ୍‌ କାଗଜ ରୋଲର୍‌ରୁ କ୍ରମାନ୍ୱୟରେ



ଛପିଥାଏ । ଅନ୍ୟଗୁଡ଼ିକ କେବଳ ଫର୍ଦ୍ଦ କାଗଜ ଛପନ୍ତି । ଉପରେ କାଗଜର ଥାକ ଲକ୍ଷ୍ୟ କର । କେତେକ ଉପର ଡାହାଣ କୋଣରେ ଟ୍ରଲିରେ ବନ୍ଧେଇ ବହିଗୁଡ଼ିକୁ ନିଆଯାଉଛି



ଆନ୍ତର୍ଜାତିକ କପିରାଇଟ୍ ସଙ୍କେତ । କପିରାଇଟ୍ ସ୍ୱତ୍ୱାଧିକାରୀଙ୍କ ନାମ ଏବଂ ଲେଖା ହେବା ବା ପ୍ରକାଶିତ ହେବା ବର୍ଷ ସହିତ ଏହି ସଙ୍କେତ ଯେଉଁ ବହିରେ ଛପାଯାଇଥାଏ ତାହାର କପିରାଇଟ୍ ଅଧିକାର ସବୁ ଦେଶରେ ସୁରକ୍ଷିତ ହୁଏ, ଯେଉଁ ଦେଶମାନେ ଆନ୍ତର୍ଜାତିକ କପିରାଇଟ୍ ଚୁକ୍ତି ପତ୍ରରେ ଯୋଗ ଦେଇଛନ୍ତି ।

ନାଥ ଠାକୁର ୧୯୪୧ରେ ମରିଥିବାରୁ ତାଙ୍କ ଲେଖାବଳୀର କପିରାଇଟ ଅଛି । ମାତ୍ର ଲୋକମାନ୍ୟ ତିଳକ ୧୯୨୦ରେ ମରିଥିବାରୁ ତାଙ୍କ ଲେଖାର କପିରାଇଟ୍ ନାହିଁ ।

ପୂର୍ବେ ଲେଖକମାନଙ୍କର କପିରାଇଟ୍ ନ ଥିଲା । ମୁଦ୍ରଣ ଓ ପ୍ରକାଶନର ବିକାଶ ଘଟିବା ପୂର୍ବରୁ ଏହାର ଆବଶ୍ୟକତା ଅନୁଭୂତ ହୋଇ ନ ଥିଲା । ବହି ବହୁ ସଂଖ୍ୟାରେ ଛାପାଯାଇ ଏବଂ ଲାଭଜନକ ଭାବେ ବିକ୍ରୟ କରିବା ସହଜ ହେବାରୁ ଲେଖକଙ୍କ କପିରାଇଟ୍ ସୁରକ୍ଷା କରିବାର ଆବଶ୍ୟକତା ଅନୁଭୂତ ହେଲା ।

କପିରାଇଟ୍ ଲେଖକଙ୍କୁ ଯେପରି ପ୍ରକାଶକଙ୍କୁ ସେହିପରି ସୁରକ୍ଷା କରେ । ପ୍ରକାଶକଙ୍କୁ ଥରେ ଏକ ବହି ଛାପିବା ପାଇଁ ସୋଲ୍ ବା ଅଦ୍ୱିତୀୟ ଅଧିକାର ଦିଆଗଲେ ଅନ୍ୟ କେହି ତାହା ଛାପି ପାରିବେନାହିଁ । ଅଧିକାଂଶ ଦେଶ ପରସ୍ପରର ଲେଖକଙ୍କର କପିରାଇଟ୍‌କୁ ସମ୍ମାନ ଦେବା ପାଇଁ ସ୍ୱୀକୃତ ହୋଇଛନ୍ତି । ଅନ୍ୟ କେତେକ ଦେଶ ଏହା କରିନାହାନ୍ତି । ମାତ୍ର ପ୍ରାୟ ସମସ୍ତେ ନିଜ ଲେଖକଙ୍କର କପିରାଇଟ୍ ନିଜ ଦେଶରେ ସୁରକ୍ଷିତ ହେବା ପାଇଁ ଆଇନ ପ୍ରଣୟନ କରିଛନ୍ତି ।

## ବହି ବିକ୍ରେତାଙ୍କ ରିହାତି

ବହି ବିକ୍ରି କରିବାରେ ବହି ବିକ୍ରେତାମାନଙ୍କୁ ଆଗ୍ରହୀ କରିବା ପାଇଁ ପ୍ରକାଶକମାନେ ତାଙ୍କ ପ୍ରକାଶିତ ବହି ବିକ୍ରେତାମାନଙ୍କୁ ବିକିଲାବେଳେ ବହିର ନିର୍ଦ୍ଧାରିତ ମୂଲ୍ୟ ଉପରେ ଶତକଡା ହାରରେ କିଛି ରିହାତି ଦିଅନ୍ତି । ଏହାକୁ କୁହାଯାଏ ଟ୍ରେଡ୍ ଡିସ୍କାଉଣ୍ଟ । ସୁତରାଂ ଯଦି ଜଣେ ପ୍ରକାଶକ ପୁସ୍ତକ ବିକ୍ରେତାଙ୍କୁ ଶତକରା ୨୫ ଡିସ୍କାଉଣ୍ଟ ଦିଏ, ତେବେ ୧୦ ଟଙ୍କା ନିର୍ଦ୍ଧାରିତ ମୂଲ୍ୟର ବହିକୁ ବିକ୍ରେତାଙ୍କୁ ଟ୭-୫୦ରେ ଦେବ । ତେଣୁ ଏହି ବହି ବିକ୍ରେତା ବହିକୁ ୧୦ ଟଙ୍କାରେ ବିକ୍ରି କରି ତାଙ୍କର ଖର୍ଚ୍ଚ ଓ ଲାଭ ବାବଦକୁ ଟ୨-୫୦ ପାଇବେ ।

## ଲେଖକଙ୍କ ପ୍ରାପ୍ୟ

ଲେଖକ କିପରି ପାରିତୋଷିକ ପାଆନ୍ତି ?

ସାଧାରଣ ଭାବରେ ପ୍ରକାଶକ ଲେଖକଙ୍କ ଲେଖା ଛାପି ବିକ୍ରୟ କରିବା ପାଇଁ ଅନୁମତି ପାଇଥିବାରୁ ଲେଖକଙ୍କୁ ଯେଉଁ ପ୍ରାପ୍ୟ ଦିଅନ୍ତି ତାହାହିଁ 'ରୟାଲ୍‌ଟି' । ଅନ୍ୟ ଜଣଙ୍କର ପରିକଳ୍ପନା ବା କୃତିକୁ ବ୍ୟବହାର କରିବା ପାଇଁ ଯେଉଁ ମୂଲ୍ୟ ଦିଆଯାଏ ତାହା 'ରୟାଲ୍‌ଟି' । ବହି ବ୍ୟବସାୟରେ ବିକ୍ରି ହୋଇଥିବା ବହିଗୁଡିକର ନିର୍ଦ୍ଧାରିତ ମୋଟ ମୂଲ୍ୟ ଉପରେ ଶତକଡ଼ା ହାରରେ ହିସାବ କରାଯାଏ । ତେଣୁ ଲେଖକଙ୍କର ଯେତେ ଅଧିକ ବହି ବିକ୍ରି ହୁଏ ସେ ସେତେ ଅଧିକ ରୟାଲ୍‌ଟି ପାଆନ୍ତି । ଉଦାହରଣ ସ୍ୱରୂପ—ଦଶ ଟଙ୍କା ମୂଲ୍ୟର ଏକ ବହି ଉପରେ ଶତକଡ଼ା ୧୦ ହାର ରୟାଲ୍‌ଟି ହୁଏ, ଏକ ଟଙ୍କା, ଅର୍ଥାତ ପ୍ରକାଶକ ବିକ୍ରି ହୋଇ-ଥିବା ପ୍ରତ୍ୟେକ ବହି ଉପରେ ଏକ ଟଙ୍କା ହିସାବରେ ରୟାଲ୍‌ଟି ଦେବେ । ଲେଖକ ଏହିଭଳି ତାଙ୍କର ଲେଖା ଦ୍ୱାରା ଅର୍ଥ ଉପାର୍ଜନ କରିବା, ସ୍ଥଳବିଶେଷରେ ଜୀବିକାର୍ଜନ କରିବା, ମୁଦ୍ରଣ ଓ ପ୍ରକାଶନର ବିକାଶ ଯୋଗୁଁ ସମ୍ଭବ ହୋଇଛି ।

ଲେଖକ ଓ ପ୍ରକାଶକଙ୍କ ସ୍ୱୀକୃତିରେ ଅନ୍ୟ ପ୍ରକାରେ ରୟାଲ୍‌ଟି ମଧ୍ୟ ଦିଆଯାଏ ଉଦାହରଣ ସ୍ୱରୂପ; ଯେତେ ବହି ଛାପା ବା ବିକ୍ରି ହେଉନା କାହିଁକି ଏକ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ଲେଖକଙ୍କୁ ଦିଆଯାଏ, ଯାହା ବିକ୍ରି ହେଉ ନିର୍ଦ୍ଦିଷ୍ଟ ସଂଖ୍ୟକ ବହି ଛାପିବା ପାଇଁ ଉପଯୁକ୍ତ ପରିମାଣ ଅର୍ଥ ଦିଆଯାଏ କିମ୍ବା କଦବା ବହି ପ୍ରକାଶନର ବ୍ୟୟ ନ ଉଠିଲାଯାଏ ପ୍ରକାଶକ ଲେଖକଙ୍କୁ କିଛି ଦିଅନ୍ତି ନାହିଁ ଏବଂ ତା'ପରେ ଲାଭ ଉଭୟେ ବାଣ୍ଟି ନିଅନ୍ତି ।

ପ୍ରକାଶକ ପ୍ରକାଶ କରିଥିବା ବହିର ଦାମ୍ ଠିକ୍ କଲାବେଳେ ବହି ବିକ୍ରେତାର ଡିସ୍‌କାଉଣ୍ଟ, ଲେଖକଙ୍କ ରୟାଲ୍‌ଟି, ପ୍ରକାଶନ ବ୍ୟୟ ଓ ଅନ୍ୟାନ୍ୟ ବ୍ୟୟ ମିଶାଇ ସ୍ଥିର କରନ୍ତି :



ଦିଲ୍ଲୀରେ ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟଙ୍କ ବହି ଦୋକାନ

## ସମ୍ପାଦକ

କେଉଁ ବହି ପ୍ରକାଶନ ପାଇଁ ଗ୍ରହଣ କରାଯିବ ସେ ବିଷୟରେ ପରାମର୍ଶ ଦେବା ପାଇଁ ଏବଂ ଉପଯୁକ୍ତ ଲେଖକଙ୍କଠାରୁ ଉପଯୁକ୍ତ ବହି ସଂଗ୍ରହ କରିବାରେ ସାହାଯ୍ୟ କରିବା ନିମନ୍ତେ ପ୍ରକାଶକମାନେ ଏଡ଼ିଟର୍ ନିଯୁକ୍ତ କରନ୍ତି । ଗୋଟିଏ ବହି ପ୍ରକାଶ କରିବା ବା ନ କରିବା କଥା ସ୍ଥିର କଲାବେଳେ ପ୍ରକାଶକଙ୍କ ମନରେ ଦୁଇଟି କଥା ଥାଏ—ବହିଟି ସେହି ଶ୍ରେଣୀୟ ବହି ଭଳି ଉତ୍ତମ କି ନୁହେଁ ଏବଂ ଯଥାଶୀଘ୍ର ସମସ୍ତ ମୁଦ୍ରିତ ବହି ବା ଅଧିକାଂଶ ବିକ୍ରି ହୋଇ ପାରିବ କି ନାହିଁ ।

ଏଡ଼ିଟରଙ୍କର ପରବର୍ତ୍ତି କାମ ହେଉଛି ଲେଖକଙ୍କ ପାଣ୍ଡୁଲିପି (ସଂକ୍ଷିପ୍ତ ଇଂରାଜୀରେ, MS ବହୁବଚନ, MSS ) ପ୍ରେସ୍ ପାଇଁ ଉପଯୁକ୍ତ କରିବା । ସେ ଯତ୍ନ ସହକାରେ ସମୁଦାୟ ଲେଖା ପଢ଼ିଲାବେଳେ କେଉଁ ଶ୍ରେଣୀର ପାଠକଙ୍କ ପାଇଁ ବହିଟି ଉଦ୍ଦିଷ୍ଟ ତାହା ମନରେ ଧାରଣା କରି ନେଇଥାନ୍ତି । ଉଚିତ ମନେକଲେ ସେ ଲେଖକଙ୍କୁ କେତେକ ପରିବର୍ତ୍ତନ କରିବା ପାଇଁ ପରାମର୍ଶ ଦିଅନ୍ତି, ଯାହାଫଳରେ ବହି ଅଧିକ ସୁଖପାଠ୍ୟ ଓ ସୁବୋଧ୍ୟ ହେବ । ଏପରି କି କେତେକ ଅଂଶ ବାଦ୍ ଦେବା ପାଇଁ ବା କିଛି ଯୋଗ କରିବା ପାଇଁ କିମ୍ବା ସଂକ୍ଷେପକରଣ ପାଇଁ ମତ ଦିଅନ୍ତି । ଏହି ଅବକାଶରେ ବା ପରେ ଦ୍ୱିତୀୟ ସ୍ତରରେ ପାଣ୍ଡୁଲିପିକୁ ବିଶେଷ ଭାବେ ସମୀକ୍ଷା କରାଯାଏ । ଯେପରିକି ବର୍ଣ୍ଣାଶୁଦ୍ଧି, ବ୍ୟାକରଣଶୁଦ୍ଧି, ସାମ୍ୟ ଓ ସମ୍ପୂର୍ଣ୍ଣତା ଇତ୍ୟାଦି ରକ୍ଷା କରାଯାଏ । ପାଣ୍ଡୁଲିପିର ମୁଦ୍ରଣବେଳେ ଯେଉଁ ଟାଇପ୍ ଯେଉଁଠାରେ ଯେପରି ବ୍ୟବହାର କରାଯିବ ତାର ନିର୍ଦ୍ଦେଶ ଦିଆଯାଏ । ଏହି ଦ୍ୱିତୀୟ ସ୍ତରର କାର୍ଯ୍ୟକୁ କୁହାଯାଏ, "କପି ଏଡ଼ିଟିଙ୍ଗ୍" । 'କପି' ଶବ୍ଦ ମୁଦ୍ରାକର MSS ପାଇଁ ତଥା ଅନ୍ୟାନ୍ୟ ଯାହା ଟାଇପ୍ ସହିତ ଯୋଡ଼ାଯିବ ସେଥିପାଇଁ ବ୍ୟବହାର କରନ୍ତି ।

# କମ୍ପୋଜିସନ୍ ଓ ପ୍ରୁଫ୍

ଉତ୍ପାଦନ ବିଭାଗ ଏହା ପରେ ଦାୟିତ୍ୱ ନେଇ ପାଣ୍ଡୁଲିପିକୁ ମୁଦ୍ରାକରଙ୍କୁ ଦିଅନ୍ତି । ବହିର ଆକାର ପ୍ରକାର, ଯେଉଁ ଟାଇପ୍ ବ୍ୟବହାର କରାଯିବ, ଯେପରି ସେଟିଙ୍ଗ୍ ବା ବସାଣ ହେବ, ପୃଷ୍ଠାରେ ଯେପରି ଲେଡ୍ ଦିଆଯିବ ଇତ୍ୟାଦି କେତେକ ବିଷୟରେ ସେ ନିର୍ଦ୍ଦେଶ ଦିଅନ୍ତି ।

ପ୍ରଥମତଃ ଏଥିପାଇଁ ମୁଦ୍ରାକର ବହିଟିକୁ ଟାଇପ୍‌ରେ କମ୍ପୋଜ କରିବାକୁ ହେବ । ଆମ ଦେଶରେ ବିଶେଷତଃ ଭାରତୀୟ ଭାଷାରେ ଏହା କମ୍ପୋଜିଟରମାନଙ୍କ ଦ୍ୱାରା ହାତରେ କରାଯାଏ—ଯେପରି ଗୁଟେନ୍‌ବର୍ଗ



ମନୋଟାଇପ୍ କମ୍ପୋଜିଙ୍ଗ୍ ମେସିନ୍‌ର 'କି ବୋର୍ଡ' । ଏହି ସ୍ତରରେ ଛବିରେ ଦେଖାଗଲା ଭଳି ଚଳନ୍ତି କାଗଜ ରୋଲ୍‌ରେ ଟାଇପ୍‌ର ଏକପ୍ରକାର ସାଙ୍କେତିକ ଛିଦ୍ର 'ପଞ୍ଚ୍' ହୋଇଯାଏ । ଏହି ରୋଲ ପର ପୃଷ୍ଠାରେ ଦିଆଯାଇଥିବା କାଷ୍ଟର (ଢ଼ଲେଇ) ଯନ୍ତ୍ରରେ ଯୋଡ଼ା ଯାଏ ।



ମନୋ କାଷ୍ଟର:-ଏହିଯନ୍ତ୍ର କାଗଜ ରୋଲର ଫାଙ୍କେଇବ ଛିଦ୍ର ଅନୁଯାୟୀ ଟାଇପ୍ ଢ଼ାଳ ଉପର ଡାହାଣ ଚିହ୍ନରେ ଦେଖାଯିବା ଟ୍ରେରେ ପାଖକୁ ପାଖ ଅକ୍ଷର ଧାଡ଼ି କରି ସଜାଇ ଦିଏ



ଏକ ମନୋଟାଇପ୍ ଫଟୋ ସେଟିଂ କି - ବୋର୍ଡ ।

କରିଥିଲେ । ଏଇ ବହିର ହିନ୍ଦି, ଉର୍ଦ୍ଦୁ ଓ ଇଂରାଜୀ ସଂସ୍କରଣ ଛଡ଼ା ଅନ୍ୟ ଭାଷା ସଂସ୍କରଣର ପାଠ ହାତରେ କମ୍ପୋଜ ହୋଇଛି । ମାତ୍ର ଯାହା ହେଉ, ପ୍ରାୟ ସବୁ ଭାରତୀୟ ଭାଷାରେ ବର୍ତ୍ତମାନ ମେସିନ୍ କମ୍ପୋଜ ବ୍ୟବହାର ହେଉଛି । କମ୍ପୋଜ ମେସିନ୍‌ରେ, ଟାଇପ୍ ମେସିନ୍ ଭଳି ଏକ କି-ବୋର୍ଡ ଥାଏ । ସେଥିରେ ଟାଇପ୍ କଲେ ଅକ୍ଷର, ଶବ୍ଦ ଓ ଧାଡ଼ି ସ୍ୱତଃ ନୂଆ ଟାଇପ୍‌ରେ ସଜାଡ଼ି ହୋଇ ଆସିଯାଏ । ବାସ୍ତବରେ କାଷ୍ଟର ମେସିନରେ ତରଳା ଧାତୁରେ ଅକ୍ଷର ପରେ ଅକ୍ଷର ବା ଧାଡ଼ି ପରେ ଧାଡ଼ି ଆବଶ୍ୟକତା ଅନୁସାରେ ଢଳେଇ ହୋଇ ଆସିଯାଏ ।

ଏକ ଲାଇନୋଟାଇପ୍ ସେଟିଙ୍ଗ୍ ମେସିନ୍ । ଏଠା ଟାଇପ୍ ଗୁଡ଼ିକୁ ଗୋଟା ଲାଇନ୍ ଭାବରେ ଢାଳ ଦିଏ । ଏହି ଧାଡ଼ିଗୁଡ଼ିକ ଛବିରେ କି-ବୋର୍ଡ ଉପରେ ବାମପାଖରେ ଥିବା ଟ୍ରେରେ ରହି ଯାଏ । ଏହି ଟ୍ରେର୍ ଧାଡ଼ି ଗୁଡ଼ିକ ଗାଲିଟ୍ରେକୁ ଥରକୁ ଥର ନିଆ ଯାଏ ।



ହାତରେ ଗୋଟିକ ପରେ ଗୋଟିଏ ଟାଇପ୍ ଧାଡ଼ିରେ ଯୋଡ଼ି ରଖିବା ପାଇଁ ହାତ କମ୍ପୋଜ ଷ୍ଟିକ୍ । ଚାରି ବା ପାଞ୍ଚ ଧାଡ଼ି କମ୍ପୋଜ ହେବା ପରେ ପର ପୃଷ୍ଠାରେ ପ୍ରଦତ୍ତ ଚିତ୍ର ଗ୍ୟାଲି ଟ୍ରେକୁ ଉଠାଇ ନିଆଯାଏ ।

କିନ୍ତୁ ପୂର୍ବେ କୁହାଯିବା ଭଳି ପୁଣି ଅଧିକ ଉନ୍ନତି ଘଟିଛି । ଛାପିବା ପାଇଁ ଧାତବ ଅକ୍ଷର ଆଉ ଅପରିହାର୍ଯ୍ୟ ହେଉନାହିଁ । ଆଧୁନିକ କି-ବୋର୍ଡ ମେସିନ୍ ଟାଇପସେଟ ନକରି ଫିଲ୍ମ୍ ଉପରେ ଫଟୋଗ୍ରାଫିକ୍ ନେଗେଟିଭ ଧାଡ଼ି ପରେ ଧାଡ଼ି ସେଟ୍ କରୁଛି । ଏହି ବହିର ଇଂରେଜୀ ଓ ହିନ୍ଦି ସଂସ୍କରଣମାନ ଏହିଭଳି ଫଟୋସେଟ୍ ବା ଫିଲମସେଟ୍ ହୋଇଛି । ଏ ବହିର ଛାପା ପ୍ରଣାଳୀ ଗୁଟେନବର୍ଗଙ୍କ ଛାପା ପ୍ରଣାଳୀଠାରୁ ସମ୍ପୂର୍ଣ୍ଣ ଅଲଗା । ସେକଥା ପରେ ଅତି ସଂକ୍ଷେପରେ ବର୍ଣ୍ଣନା କରାଯିବ । ଧାତବ ଟାଇପ୍‌ରେ ସେଟ୍ କରାଯିବା ପାଠ ଲମ୍ବା ଟ୍ରେମାନଙ୍କରେ (ଗ୍ୟାଲି କୁହାଯାଏ) ଏବଂ ଫଟୋ ସେଟିଂକୁ ଲମ୍ବା ନେଗେଟିଭ ଫିଲମରେ ରଖାଯାଏ । ଟାଇପ୍ ସେଟିଂ ହୋଇଥିଲେ ହାତଚଲା ବେଲନର ସାହାଯ୍ୟରେ କାଳି ଲଗାଇ ହାତଚଲା ମେସିନରେ ରଫ ପ୍ରିଣ୍ଟ (ପ୍ରୁଫ୍) ବାହାର କରାଯାଏ । ଫିଲିମ ସେଟିଂ ହୋଇଥିଲେ ଶସ୍ତା ପତଳା ହାଲୁକା ସମ୍ବେଦନଶୀଳ (ସେନସିଟିଭ) କାଗଜରେ ରଫ ପ୍ରିଣ୍ଟ ବାହାର କରାଯାଏ । ଏ ଉଭୟ ପ୍ରକାରକୁ ଗାଲି ପ୍ରୁଫ୍ କୁହାଯାଏ । କମ୍ପୋଜ ହୋଇଥିବା ପାଠକୁ ପଢ଼ି ସଂଶୋଧନ କରିବା ପାଇଁ ଏହି ଯେଉଁ ଅଳ୍ପ କେତେ ଖଣ୍ଡ ଛାପାଯାଏ, ତାହାକୁ ମୁଦ୍ରାକରମାନେ କହନ୍ତି ପ୍ରୁଫ୍ ।

ଗାଲି ପ୍ରୁଫ୍ ପ୍ରକାଶକମାନଙ୍କ ଦ୍ୱାରା ଏବଂ ପ୍ରାୟଶଃ ଲେଖକମାନଙ୍କ ଦ୍ୱାରା ସଂଶୋଧିତ ହୁଏ ଏବଂ ସଂଶୋଧନ ଚିହ୍ନ ସହିତ ଛବି, ନକ୍ସା ସଂଯୋଜନ, ଶୀର୍ଷନାମାର ସ୍ଥାନ ଓ ପ୍ରକାର ଗ୍ୟାଲିରୁ ପୃଷ୍ଠାର ବିଭକ୍ତିକରଣ ଆଦି ଅନ୍ୟାନ୍ୟ ନିର୍ଦ୍ଦେଶସହ ମୁଦ୍ରାକରଙ୍କୁ ପ୍ରୁଫ୍ ଫେରସ୍ତ କରାଯାଏ ।

ପୃଷ୍ଠା ସଜ୍ଜିତ ହୋଇଯିବା ପରେ ପୁଣି ଥରେ ପ୍ରୁଫ୍ ବାହାର କରାଯାଇ ସଂଶୋଧିତ ହୁଏ ଏବଂ ଏହି ସଂଶୋଧନ ପରେ କେତେକ କ୍ଷେତ୍ରରେ ପୁଣି ଆଉ ଥରେ ପ୍ରୁଫ୍ ଦେଖାଯାଏ । ଯେତେବେଳେ ପ୍ରକାଶକ ଓ ଲେଖକ ସବୁ ଅଶୁଦ୍ଧି ସଂଶୋଧିତ ହୋଇଛି ବୋଲି ବା ଛାପା ପୂର୍ବରୁ ହେବ ବୋଲି ବିଶ୍ୱାସ କରନ୍ତି ସେତେବେଳେ ପ୍ରକାଶକ ମୁଦ୍ରାକରଙ୍କୁ ଛାପିବାକୁ ଆଦେଶ ଦିଅନ୍ତି ।



ଏକ ଗ୍ୟାଲି ଟ୍ରେ



ଗ୍ୟାଲିରୁ ପୃଷ୍ଠା ବିଭକ୍ତ କରଣ

## ଉମୋଚ କରିବା

ଛାପାଖାନାଗୁଡିକ ଗୁଟେନ୍‌ବର୍ଗଙ୍କ ସମୟଠାରୁ ବହୁ ଅଗ୍ରଗତି କରିଛନ୍ତି । କେତେକ ମେସିନ ଏକାବେଳେ ୬୫ ×୮୬ ସେ.ମି.ର କାଗଜ ଫର୍ଦ୍ଦରେ ଏକ ଟିଠିରେ ଏକା ଥରକେ ୧୬ପୃଷ୍ଠା ଛାପି ପାରନ୍ତି । ଏଭଳି ଛାପା କଳରେ ଏହି ବହି ଭଳି ଗୋଟିଏ ବହିକୁ ଚାରି ଥରରେ ଛାପି ଦିଆଯାଇ ପାରିବ । କାଗଜର ଦୁଇ ପିଠି ଏକା ଥରକେ ଛାପା ହେଲା ଭଳି ବା ଏକ ପିଠିପରେ ଅନ୍ୟ ପିଠି ସଙ୍ଗେ ସଙ୍ଗେ ଛାପିଲା ଭଳି ମଧ୍ୟ ଛାପା କଳ ଅଛି । କଳା ଧଳା ଛବି ନକ୍‌ସା ମଧ୍ୟ ପାଠ ସହିତ ଛାପାଯାଏ । ରଙ୍ଗିନ୍‌ ଚିତ୍ର ଆଉଥରେ ଛାପା ଯାଏ ।

ବିଷୟଟା ସରଳ କରିବା ପାଇଁ; ମନେକର ଗୋଟିଏ ଛାପା କଳ ଥରକେ ଚାରି ପୃଷ୍ଠା ଛାପୁଛି—





ଏକ ଅଫ୍‌ସେଟ୍ ମେସିନ୍ । ଏହି ରଙ୍ଗ ମେସିନ୍‌ରେ ଏ ବାହାର ଛନ୍ଦ ଓ ଇଂରେ ସଂସ୍କରଣ ଏବଂ ଅନ୍ୟ ସବୁ ସଂସ୍କରଣ ପାଇଁ ଛବି ଗୁଡ଼ିକ ଛପା ଯାଉଥିଲା

ପୃଷ୍ଠା ଗୁଡ଼ିକ ଠିକ୍ କ୍ରମରେ ରହିବା । (ତଳେ ଦିଆଯାଇଥିବା ପାଠକୁ ଅନୁସରଣ କର) କଳା ସଂଖ୍ୟା ଗୁଡ଼ିକ ଫର୍ଦ ଉପରେ ପୃଷ୍ଠା ସଂଖ୍ୟାର ସୂଚକ । ରଙ୍ଗିନ୍ ସଂଖ୍ୟା ଗୁଡ଼ିକ ସେହି ଫର୍ଦର ପଛ ପାଖରେ ଥିବା ପୃଷ୍ଠାର ସୂଚକ




ଆୟତାକାରର ଫର୍ଦ୍ଦେ କାଗଜ ନିଅ । ଲମ୍ବ ଭାବରେ ଏହାକୁ ମଝିରୁ ଭାଙ୍ଗ, ତା'ପରେ ବାମରୁ ଡାହାଣକୁ ଚଉଡ଼ା ବାଗରେ ଭାଙ୍ଗ ଏବଂ ତା'ପରେ ଧାର ନ କାଟି ଯେଉଁ ପୃଷ୍ଠା ହେଲା ୧ ରୁ ୮ ଯାଏ ନମ୍ବରିଂ କର ଏବଂ ଫର୍ଦ୍ଦକୁ ଫିଟାଅ । ଦେଖିବ ଫର୍ଦ୍ଦର ଗୋଟିଏ ପୃଷ୍ଠାରେ ୧, ୪, ୫ ଓ ୮ ଏକ ନିର୍ଦ୍ଦିଷ୍ଟ ପ୍ରକାରରେ ଛାପା ହେବ ଏବଂ ଅନ୍ୟ ପୃଷ୍ଠାରେ ୨, ୩, ୬ ଓ ୭ ଏକ ନିର୍ଦ୍ଦିଷ୍ଟ ପ୍ରକାରରେ ଛାପା ହେବ । କାଗଜକୁ ପୁଣି ଭାଙ୍ଗି ଦେଲେ ପୃଷ୍ଠାଗୁଡ଼ିକ ଠିକ୍ ଯଥାକ୍ରମରେ ରହିବ । ତେଣୁ ମୁଦ୍ରାକର

ଏହି କ୍ରମରେ ଇସ୍ପାତ ଫ୍ରେମ୍‌ରେ ଫର୍ମା ଇମ୍ପୋଜ କରି ଖୁବ୍ କଷିଦିଏ । ସେ ମଧ୍ୟ ନିଶ୍ଚିତ ହେବାକୁ ହେବ ଯେ ବହିର ପ୍ରତି ପୃଷ୍ଠାର ହାସିଆ ( MARGIN ) ଯେପରି ସମାନ ରହେ ଏବଂ ଉଭୟ ପିଠିରେ ଛାପା ପୃଷ୍ଠା ଠିକ୍ ପଛକୁ ପଛ ରହେ ଅର୍ଥାତ୍ ପ୍ରତିପତ୍ରର ଉଭୟ ପୃଷ୍ଠାର ଛାପା ଠିକ୍ ପିଠିକି ପିଠି ପଡ଼େ । (ପତ୍ର ଅର୍ଥ ବହିର ଦୁଇ ପୃଷ୍ଠା ବିଶିଷ୍ଟ ଗୋଟିଏ ପତ୍ର ଏବଂ ସାଧାରଣତଃ ଉଭୟ ପୃଷ୍ଠା ଛାପା ହୋଇଥାଏ ।) କୌଣସି ଏକ ଭଲ ଛାପା ହୋଇଥିବା ବହିର ଗୋଟିଏ ପତ୍ର ଧରି ଆଲୋକ ସମ୍ମୁଖରେ ରଖି ଦେଖ—ଏସବୁ ପ୍ରଯତ୍ନର ଫଳ ଆଖିରେ ପଡ଼ିବ । ଦୁର୍ଭାଗ୍ୟବଶତଃ ତୁମେ ଅନେକ ବହି ଦେଖିବ ଯେଉଁଥିରେ ଏଭଳି ପ୍ରଯତ୍ନର ଅଭାବ ରହିଛି ।




ସେକସନ୍ ଗୁଡ଼ିକ ଠିକ୍ କ୍ରମରେ ରଖାଯାଉଛି

# ବନ୍ଧେଇ

ଗୋଟିଏ ବହିର ସବୁ ଫର୍ମା ଛାପା ସରିବା ପରେ ଛାପା ଫର୍ମାଗୁଡିକ ଦପ୍ତରୀ ବିଭାଗକୁ ପଠାଯାଏ ଏବଂ ଫର୍ମା ନମ୍ବର ବା ବିଭାଗ ଅନୁଯାୟୀ ଭଙ୍ଗି ଦିଆଯାଏ । ତା'ପରେ ଏହି ଫର୍ମାଗୁଡିକ କ୍ରମ ଅନୁସାରେ ଏକତ୍ର କରାଯାଇ ପଛଧାରଠାରେ ସିଲେଇ କରାଯାଏ । ଏହି ସିଲେଇ ବହି ଫର୍ମା କେତେଖଣ୍ଡ ଲେଖାଏଁ ଏକତ୍ର ତଳ ଉପର ଓ ଡାହାଣ ପାଖ (ଅର୍ଦ୍ଧ ବହିର ବାମ ପାଖ) କଟେଇ କରି ସୁନ୍ଦର ବହି ଆକାର କରାଯିବା ଯୋଗୁଁ ପୃଷ୍ଠା ସବୁ ଖୋଲିଯାଏ । ତା'ପରେ କାଗଜ, କାର୍ଡବୋର୍ଡ ବା କନାର ମଲାଟ ଯୋଡି ଦିଆଯାଏ ।

ମେସିନ୍‌ରେ ସୁତାରେ ସିଲେଇ କରାଯାଇ [illegible] ସମାନ କରି କଟାଯାଉଛି ଏବଂ ଅଧିକ ମଜବୁତ ହେବା ପାଇଁ ଅଠାଫିତା ଲଗାଯାଉଛି



ବୋର୍ଡ କଟିସାରି [illegible] ପଛ ଭାଗରେ ଅଠା ଲଗାଇ ବହି ସହିତ ଯୋଡ଼ ଦିଆଯାଏ








ଏହି ବହି ଭଳି ମଝି ସିଲେଇ ବନ୍ଧେଇ । ସେକ୍ସନ୍ ଗୁଡିକ ଗୋଟିକ ଭିତରେ ଗୋଟିଏ ପୃଷ୍ଠା ଯାଇ ଉପରେ ମଲାଟ ଦିଆଯାଏ ଏବଂ ଭିତରେ ମଝି ଭାଙ୍ଗଠାରେ ଷ୍ଟାପଲ୍ କରାଯାଏ

ଏହି ବହିଭଳି ଛୋଟ ବହି ୩୨ ପୃଷ୍ଠାର ଦୁଇଟି ସେକ୍ସନ୍ ଗୋଟିକ ଭିତରେ ଗୋଟିଏ ପୂରାଇ ଏକ କାଗଜ ମଲାଟ ଭିତରେ ରଖାଯାଏ ଓ ସମୁଦାୟକୁ ପଛ ଭାଙ୍ଗଠାରେ ଷ୍ଟାପଲ୍ ମାରି ଆବଶ୍ୟକତା ଅନୁସାରେ କାଟି ଦିଆଯାଏ । ଏହିଭଳି ବନ୍ଧେଇ ୧୬ ପୃଷ୍ଠାର ୪ଟି ସେକ୍ସନ୍ ବା ୮ ପୃଷ୍ଠାର ୮ଟି ସେକ୍ସନ୍ ପାଇଁ ମଧ୍ୟ କରାଯାଏ ।

# ଅଫ୍‌ସେଟ ଛାପା

ସ୍ମରଣ ଥିବ, କୁହାଯାଇଛି ଯେ ଏହି ବହିର ହିନ୍ଦି ଓ ଇଂରାଜୀ ସଂସ୍କରଣ-ମାନ ଫଟୋସେଟ୍ ହୋଇଛି । ଫଟୋଗ୍ରାଫ୍ ନେଗେଟିଭ୍‌ରୁ ଏହା କିପରି ଛାପାଯାଏ ? ଏହା ଫଟୋ ଅଫ୍‌ସେଟ ପ୍ରଣାଳୀ ଦ୍ୱାରା ହୁଏ । (ଗୁଟେନ୍-ବର୍ଗଙ୍କ ପ୍ରଣାଳୀକୁ ଲେଟର ପ୍ରେସ୍ କୁହାଯାଏ ।) ଅଫ୍‌ସେଟ ଛାପା ଏକ ସମତଳ ପୃଷ୍ଠ (ପ୍ଲେଟ୍)ରୁ କରାଯାଏ । ଲେଟର୍ ପ୍ରେସ୍ ଭଳି ଛାପା

ଅଫ୍‌ସେଟ୍ ଛାପା କଳର ପ୍ରକ୍ରିୟା :-ରୋଲର [୧] ତଳ ପାଣି ଟାଙ୍କିରେ ବୁଲୁଥିବା ରୋଲରୁ ଜଳୀୟାଂଶ ଗ୍ରହଣ କରେ । ରୋଲର [୨] ତୈଳ ଭିତ୍ତିକ କାଳି ନେଇ ରୋଲର [୩]ର ସ୍ପର୍ଶରେ ଆସେ କେତେବେଳେ ଏହାର ଅଙ୍କିତ ବୃତ୍ତାକାର ଅଂଶରେ କାଳି ଲାଗିବା ଦରକାର—ଠିକ୍ ଏହା ରୋଲର [୧] ଦ୍ୱାରା ସିକ୍ତ ହୋଇ ଯାଇବା ପରେ । ତାର ଅଙ୍କିତ ଦାଗରେ ରୋଲରରୁ ସୃଷ୍ଟି ହେଲା ବେଳେ ରୋଲରରୁ ପ୍ରତିଛବି ରୋଲର୍ [୪]ର ରବର ପୃଷ୍ଠ ଉପରକୁ ଉଠିଯାଏ ଏବଂ ଏଠାରୁ ରୋଲର [୫] ର ଚାପ ପାଇ କାଗଜ ପୃଷ୍ଠାରେ ଛାପା ହୋଇଯାଏ । ସାଦା କାଗଜ [୬] ଠାରେ ଗିଳେଇ ଦିଆଯାଏ । ଏବଂ [୭]ରେ ଛାପା ଫର୍ଦ ବାହାରି ଆସେ । ପ୍ରକୃତ ଯାନ୍ତ୍ରିକ ପ୍ରକ୍ରିୟା ଅବଶ୍ୟ ଏହାଠାରୁ ଅଧିକ ଜଟିଳ ।




ନ ଥିବା ସାଧାରଣ ପୃଷ୍ଠରୁ ସମଉଚ୍ଚତାରେ ଉଠିଥିବା ତଳ ଦ୍ୱାରା ଛାପାଯାଏନାହିଁ । ପାଣି ଓ ତେଲ ମିଶନ୍ତି ନାହିଁ, ବରଂ ଏକ ଅନ୍ୟକୁ ହଟାଏ । ଏହି ପ୍ରକ୍ରିୟା ଉପରେ ଏହା ନିର୍ଭରଶୀଳ ।

ଯେଉଁ ପ୍ରତିକୃତି (ପାଠ ଓ ଛବି) ଛାପାଯିବ ତାହା ପ୍ରଥମେ ଫଟୋ-ଗ୍ରାଫ ପ୍ରଣାଳୀରେ ବିଶେଷ ଭାବେ ପ୍ରସ୍ତୁତ ଜିଙ୍କ୍ ପ୍ଲେଟ୍ ଉପରକୁ ଉଠେଇ

ନିଆଯାଏ । ପ୍ରତିକୃତି ଅଂଶ ତେଲିଆ ହୋଇଥିବାରୁ ପାଣି ଧରେନାହିଁ, ମାତ୍ର ତେଲିଆ କାଳି ଧରିନିଏ । ଏହି ପ୍ଲେଟ୍ ଉପରେ ପ୍ରଥମେ ଜଳୀୟାଂଶ ଲାଗି ରୋଲର୍ ଗଡ଼ିଯାଏ । ତା'ପରେ କାଳି ଲଗା ରୋଲର୍ ଗଡ଼େ । ପ୍ରଥମ ରୋଲରରୁ ଜଳୀୟାଂଶ ଖାଲିସ୍ଥାନମାନଙ୍କରେ ଲାଗି ସିକ୍ତ କରେ ପ୍ରତିକୃତି ଅଂଶରେ ଲାଗେନାହିଁ । ଦ୍ୱିତୀୟ ରୋଲର୍‌ରୁ ତେଲିଆ କାଳି ଜଳୀୟାଂଶ ଲାଗିଥିବା ସ୍ଥାନରେ ନ ଲାଗି କେବଳ ପ୍ରତିକୃତି ଅଂଶ ଶୁଖିଲା ଥିବାରୁ ସେଠାରେ ଲାଗେ । ଆଉ ଏକ ରୋଲର୍ ତା'ପରେ ପ୍ଲେଟ୍ ଉପରେ ଗଡ଼ିବାରୁ ପ୍ରତିକୃତି ରବର ରୋଲର୍‌କୁ ଉଠିଯାଏ । ଏହି ରୋଲର୍ କାଗଜ ଉପରେ ଗଡ଼ିଯାଇ ପ୍ରତିକୃତିକୁ ତା' ଉପରକୁ ଉଠାଇଦିଏ ।

ଅଫସେଟ୍ କ୍ୟାମେରା—ଫଟୋଗ୍ରାଫ ଦ୍ୱାରା ଅଫସେଟ୍ ପ୍ଲେଟ୍ କରିବା ପାଇଁ ଡିଜାଇନ୍ ଗୁଡ଼ିକ କେନ୍ଦ୍ରର ଏକ ବୃହତ୍ ଫ୍ରେମ୍‌ରେ ଥାଏ । ଏହା ଯାନ୍ତ୍ରିକ ପ୍ରକ୍ରିୟାରେ ଆଗକୁ ପଛକୁ କରାଯାଇପାରେ । ଆର୍କ ଟାଇପ୍ ଫ୍ଲଡ଼୍ ଲାଇଟ୍ ଦ୍ୱାରା ଡିଜାଇନ୍ ଗୁଡ଼ିକ ଆଲୋକିତ ହୁଏ । ଏହାର ପଛରେ କ୍ୟାମେରା ରହିଛି । ଆବୃତ ଜବକାରେ ଫ୍ରିଜ ମଧ୍ୟ ଦେଖାଯାଉଛି ।



# ଛବି ଓ ବର୍ଣ୍ଣ

ବର୍ତ୍ତମାନ ଛବି ସମ୍ପର୍କୀୟ ଆଲୋଚନା କରିବା । ଲେଟର ପ୍ରେସ୍ ପ୍ରଣାଳୀରେ (ଗୁଟେନ୍‌ବର୍ଗ) ଛବିଗୁଡ଼ିକ ଜିଙ୍କ୍ ବା ତମ୍ବା ପାତ ଉପରେ ଉଠାଯାଇ ତାହାକୁ କାଠ ଉପରେ ଯୋଡ଼ାଯାଏ, ଯେପରି ତାହାର ଉଚ୍ଚତା ଟାଇପ୍ ପୃଷ୍ଠର ଉଚ୍ଚତା ସହିତ ସମାନ ହୁଏ । ଏହି ପାତ ଓ କାଠକୁ ଏକତ୍ର କୁହାଯାଏ ବ୍ଲକ । ଛବିଗୁଡ଼ିକ ଫଟୋଗ୍ରାଫ୍ ଓ ରାସାୟନିକ ପ୍ରକ୍ରିୟା ସମ୍ମିଶ୍ରଣରେ ଧାତବ ପାତ ଉପରେ ଉଠାଯାଇ ଉତ୍କୀର୍ଣ୍ଣ କରାଯାଏ, ଅର୍ଥାତ୍ ଛାପାଯିବା ପୃଷ୍ଠକୁ ଛାପାନଯିବା ପୃଷ୍ଠଠାରୁ ଉଚ୍ଚତର କରାଯାଏ । ଅଫ୍‌ସେଟ୍ ପ୍ରଣାଳୀରେ ଛବି ପ୍ରସ୍ତୁତି ଏହିଭଳି ହୁଏ, କିନ୍ତୁ ସାଧାରଣ ପୃଷ୍ଠରୁ ଛାପା ପୃଷ୍ଠକୁ ଉଚ୍ଚତର କରାଯାଏ ନାହିଁ । ପାଠ ବିଷୟ ଭଳି ପ୍ରତିକୃତିର କେବଳ ପୃଷ୍ଠ ପରିବର୍ତ୍ତନ କରାଯାଏ । ବାସ୍ତବରେ ଯଦି ପାଠ ଓ ଛବି ଏକ ରଙ୍ଗରେ ଛାପା ଯିବ (ସାଧାରଣତଃ କଳା) ତେବେ ଦୁଇଟିକୁ ଏକତ୍ର ପ୍ଲେଟ୍ ଉପରକୁ ବଦଳାଯାଏ ।

ସହଜ ଉପାୟରେ ଏକାଧିକ ବର୍ଣ୍ଣରେ ଛାପିବା ପାଇଁ ପ୍ରତିରଙ୍ଗକୁ ଥର ଥର କରି ଛାପାଯାଏ । ଏହା ସମ୍ଭବ ହୁଏ ଯଦି ରଙ୍ଗଗୁଡ଼ିକ ସରଳ ଏବଂ ସ୍ପଷ୍ଟ ଥାଏ । ଏ ବହିର ମଲାଟକୁ ଛାଡ଼ି ଅନ୍ୟ ପୃଷ୍ଠାର ଚିତ୍ରଗୁଡ଼ିକ ସେହିପରି ହୋଇଛି, ମାତ୍ର ଯଦି ଦୃଷ୍ଟାନ୍ତ ଚିତ୍ରଗୁଡ଼ିକରେ ଉଣା ଅଧିକା ଛାୟାରଙ୍ଗ (ଟୋନ) ଫଟୋଗ୍ରାଫ୍ ବା ରଞ୍ଜିତ ଚିତ୍ରଭଳି ଏକାଧିକ ରଙ୍ଗ ଥାଏ, ତେବେ ପ୍ରତିକୃତିକୁ ଅତି କ୍ଷୁଦ୍ରକ୍ଷୁଦ୍ର ବିନ୍ଦୁରେ ବିଭକ୍ତ କରାଯାଏ । ଦୃଷ୍ଟାନ୍ତ ଚିତ୍ରକୁ ବ୍ଲକ ବା ଅଫ୍‌ସେଟ୍ ପ୍ଲେଟ୍ ଉପରକୁ ଉଠାଇଲାବେଳେ ଛବି ଲାଇନ୍‌ର ଗୋଟିଏ ପର୍ଦ୍ଦା କାଚ ପ୍ଲେଟ୍ ଉପରେ ରଖି ତାହା ଦ୍ୱାରା ନବକାଚକୁ ଆବୃତ କରି ଏହା କରାଯାଏ । ବ୍ଲକ ବା ଅଫ୍‌ସେଟ୍ ପ୍ଲେଟ୍‌ର

ଅଧିକା ଘନବିନ୍ଦୁଗୁଡ଼ିକ ବଡ଼ ଓ ଲାଗି ଲାଗି ରହେ, ତେଣୁ ଘନ ଭାବରେ ଛାପା ହୁଏ । ସ୍ୱଳ୍ପ ଘନ ଅଂଶରେ ବିନ୍ଦୁଗୁଡ଼ିକ କ୍ଷୁଦ୍ରତର ଓ ବିକ୍ଷିପ୍ତ ଭାବରେ ରହେ ଏବଂ ଧଳା ବା ପ୍ରାୟଶଃ ଧଳା ଅଂଶରେ ବିନ୍ଦୁଗୁଡ଼ିକ ପ୍ରାୟ ଲୁପ୍ତ ହୁଏ । ଆଲୋକରୁ ଅନ୍ଧାର ବା ଅନ୍ଧାରରୁ ଆଲୋକକୁ ଗତିକ୍ରମ ବୃଦ୍ଧିରେ ବା କ୍ଷିପ୍ର ଭାବରେ କିମ୍ବା ତୀକ୍ଷ୍ଣ ଭାବରେ ହୋଇପାରେ । ଫଟୋ ପୁନରୁଦ୍ଧାରବେଳେ ତୀବ୍ରତମ ଆଲୋକ ଏବଂ ଘନଛାୟା ଯେପରି ଆବଶ୍ୟକ ସେପରି ହୁଏ । ପତ୍ରିକାମାନଙ୍କରେ ଛପାଯାଇଥିବା ଫଟୋଗ୍ରାଫ୍‌କୁ ଲକ୍ଷ୍ୟ କଲେ ଏହି ବିନ୍ଦୁର ପ୍ରତିରୂପ ସ୍ପଷ୍ଟ ଦେଖିପାରିବ । ପରିବର୍ଦ୍ଧକ କାଚରେ ଏହା ଅଧିକ ସ୍ପଷ୍ଟ ଦେଖାଯିବ ଏବଂ ବିଭିନ୍ନ ଆକାରର ବିନ୍ଦୁମାନ ଛାୟାକୁ (ଟୋନ୍) କିପରି ପ୍ରଭାବିତ କରେ ତାହା ଜାଣିହେବ ।

ରଙ୍ଗିନ୍ ଫଟୋଗ୍ରାଫ୍ ବା ରଞ୍ଜିତ ଚିତ୍ରର ପୁନରୁତ୍ପାଦନ କଲା-ବେଳେ କଳା ଧଳା ଫଟୋଗ୍ରାଫ୍ ବା ରେଖାଚିତ୍ର ଭଳି ଆମେ କେବଳ ଟୋନ୍ ନୁହେଁ ଅସଂଖ୍ୟ ଶ୍ରେଣୀର ରଙ୍ଗ ବା ରଙ୍ଗଛାୟାର ସାମଞ୍ଜସ୍ୟ ବିଧାନ କରିବାକୁ ହେବ । ଏହା ସମ୍ଭବ ହେଉଛି ଏସବୁ ଚାରି ରଙ୍ଗର ସଂଯୋଗରେ ବିଭାଜନ କରାଯାଇ ପାରେ ବୋଲି—ହଳଦିଆ, ମାଜେଣ୍ଟା (ଘନ ଲୋହିତାଭ ରଙ୍ଗ), ସାଇଏନ୍ (ଶାଗୁଆ ନୀଳ—ନୀଳର ଛାୟାରଙ୍ଗ) ଏବଂ କଳା । ଏଗୁଡ଼ିକର ବିଭିନ୍ନ ଶକ୍ତି ବିଶିଷ୍ଟ ମିଶ୍ରଣରେ ମୋଟ ପ୍ରଭାବ ମିଳିଥାଏ । ଯଦି ଆମର ଏହି ରଙ୍ଗମାନଙ୍କ ଅନୁଯାୟୀ ବ୍ଲକ ବା ପ୍ଲେଟ ଥାଏ ଏବଂ ସେସବୁ ଗୋଟିକ ଉପରେ ଗୋଟିଏ ଛାପାଯାଏ ତାହାହେଲେ ପୁନରୁତ୍ପାଦନରେ ଆମେ ଛବିର ପ୍ରକୃତ ରଙ୍ଗ ପାଇବା ।

ମୂଳ ଚିତ୍ରର ରଙ୍ଗମାନଙ୍କୁ ଅଲଗା କରିବା ପାଇଁ ଫଟୋଗ୍ରାଫିକ୍ ଫିଲ୍‌ଟର୍ (ଶୋଷକ) ବ୍ୟବହାର କରି ଚାରିଟି ସ୍ୱତନ୍ତ୍ର ଫଟୋ ନିଆଯାଏ । ପ୍ରତିଥର ଅନାବଶ୍ୟକ ରଙ୍ଗ ଫିଲ୍‌ଟର୍‌ରେ ଶୋଷି ହୋଇଯାଇ କେବଳ ଆବଶ୍ୟକ ରଙ୍ଗ ମୂଳଚିତ୍ରରେ ତାହାର ଶକ୍ତି ଅନୁପାତରେ ଧରାଦିଏ । ଏହିଭଳି ପ୍ରତି ରଙ୍ଗ ପାଇଁ ଗୋଟିଏ ଲେଖାଏଁ ଚାରିଟି ନେଗେଟିଭ୍ ପ୍ରସ୍ତୁତ ହୁଏ । ଏହିଗୁଡ଼ିକ ବ୍ଲକ ବା ପ୍ଲେଟ୍ ତିଆରିରେ ବ୍ୟବହୃତ ହୁଏ ।



ବହୁ ଗୁଣ ପରିବର୍ଦ୍ଧିତ ଗୋଟିଏ ସ୍କ୍ରିନ୍



ଗୋଟିଏ ହାଫଟୋନ୍ ବ୍ଲକ୍





ଗୋଟିଏ ହାଫଟୋନ୍ ଛବି ଏବଂ ବଢ଼ାର ପ୍ରକାର ଦେଖାଇବା । ବହୁ ଗୁଣ ପରିବର୍ଦ୍ଧିତ ଏହାର ଅଂଶ



ବହୁଗୁଣ ପରିବର୍ଦ୍ଧିତ ଏକ ହାଫଟୋନ୍ ବ୍ଲକକୁ ଗୋଟିଏ କଡରୁ ଦେଖିଲେ ଯେପରି ଦେଖାଯିବ

ରଙ୍ଗ ଛାପିବାରେ ଯେତେବେଳେ ଏଗୁଡିକ ଗୋଟିକ ଛାପା ଉପରେ ଆଉ ଗୋଟିଏ ସ୍ୱ ସ୍ୱ ସ୍ୱଚ୍ଛରଙ୍ଗିନ୍ କାଳିରେ ଛାପାଯାଏ, ସେତେବେଳେ ମୁଦ୍ରଣ ପ୍ରାୟଶଃ ମୂଳ ଚିତ୍ର ଭଳି ଜଣାଯାଏ ।

ବିଶିଷ୍ଟ ପ୍ରକାରର ଛାପାପାଇଁ, ଉଦାହରଣ ସ୍ୱରୂପ ଆର୍ଟ ପ୍ରିଣ୍ଟ ପାଇଁ, ଅଧିକ ବିଭାଜନ ଆବଶ୍ୟକ ହୁଏ ଏବଂ ସାତ ଆଠ କିମ୍ବା ଅଧିକ ରଙ୍ଗର ଛାପା ଦରକାର ହୁଏ । ଉଦାହରଣ ସ୍ୱରୂପ ସୁନେଲି ରଙ୍ଗ, ଯାହା



ଦୁଇ ରଙ୍ଗର ଏକାଗଢନ୍ ବ୍ଲକ୍ । ଦୁହେଁଙ୍କୁ ସ୍ୱତନ୍ତ୍ର ଛାପିଲେ ଏବଂ ପ୍ରଥମ ଉପରେ ଦ୍ୱିତୀୟ ରଙ୍ଗକୁ ଛାପିଲେ ଯେପରି ଦେଖାଯିବ

ପ୍ରାୟଶଃ ଭାରତୀୟ କ୍ଷୁଦ୍ର ପ୍ରତିକୃତି ଛାପାରେ ବ୍ୟବହୃତ ହୁଏ, ତାହା ଚାରି ରଙ୍ଗର ଛାପାରେ ନିଷ୍ପ୍ରଭ ହଳଦିଆ ରଙ୍ଗ ଦେଖାଯାଏ । ପ୍ରକୃତ ସୁନେଲି ଆଭା ଆଣିବା ପାଇଁ ଅଧିକା ଥରେ ଅସଲି ବା ନକଲି ସୁନେଲି କାଳିରେ ଛାପାଯାଏ । ଅନ୍ୟ ପକ୍ଷରେ ଏକବାରେ ଠିକ୍ ସଦୃଶ ପୁନରୁତ୍ପାଦନ ଆବଶ୍ୟକ ନ ଥିଲେ ତିନିରଙ୍ଗର ଛାପା ଯଥେଷ୍ଟ ହୁଏ— କଳାରଙ୍ଗର ବିଭାଜନ ବାଦ ଦିଆଯାଇ ପାରେ । ଅନ୍ୟ ତିନୋଟିର ସମ୍ମିଶ୍ରଣ ବିଭିନ୍ନ ଗାଢ଼ତର ଧୂସର ଓ କଳା ରଙ୍ଗ ଦେଖାଯାଏ । କିନ୍ତୁ କେବେ ବାସ୍ତବ ଗାଢ଼ କଳା ମିଳେ ନାହିଁ ଯାହାକି ଅବିକଳ ପୁନରୁତ୍ପାଦନ ଆବଶ୍ୟକ କରେ ।

ଚାରି ରଙ୍ଗର ମୁଦ୍ରଣ ପ୍ରଣାଳୀ ଏ ବହିର ମଲାଟରେ ଦେଖାଇ ଦିଆଯାଇଛି ।

ଏହି ବହିର ସବୁ ଭାଷାର ସବୁ ସଂସ୍କରଣ ପାଇଁ ପାଠ ଭିତରେ ଛବିଗୁଡ଼ିକ ଏକ ବା ଦୁଇରଙ୍ଗରେ ଏବଂ ମଲାଟ ଚାରିରଙ୍ଗରେ ଅଫ୍‌ସେଟ୍ ପ୍ରଣାଳୀରେ ଛାପା ହୋଇଛି । ହିନ୍ଦି ଓ ଇଂରେଜୀ ସଂସ୍କରଣ ପାଠ ଫଟୋସେଟିଂ ହୋଇ ଅଫ୍‌ସେଟ୍‌ରେ ଛାପାଯାଇଛି । ଉର୍ଦ୍ଦୁ ସଂସ୍କରଣରେ ମଧ୍ୟ ପାଠ ଅଫ୍‌ସେଟ୍‌ରେ ଛାପାହୋଇଛି; ମାତ୍ର ଏହା ଜଣେ କତିବ୍ (ନିପୁଣ ହସ୍ତାକ୍ଷର ଶିଳ୍ପୀ) ହାତ ଲେଖାକୁ ଫଟୋଗ୍ରାଫିକ୍ ପୁନରୁତ୍ପାଦନ ପ୍ରଣାଳୀରେ କରାଯାଇଛି । ତେଣୁ ଅନ୍ତତଃ ଏହି କ୍ଷେତ୍ରରେ ସୁନ୍ଦର ଗ୍ରନ୍ଥ ପ୍ରସ୍ତୁତି ରୂପକ ପ୍ରାଚୀନ କଳା ପରମ୍ପରାକୁ ବ୍ୟବହାର କରାଯାଇଛି । ପ୍ରତି ଗ୍ରନ୍ଥ କେବଳ ଯେ ଲେଖକଙ୍କ ସୃଷ୍ଟି ତାହା ନୁହେଁ, ହସ୍ତାକ୍ଷର ଶିଳ୍ପୀଙ୍କର ମଧ୍ୟ ।

କିନ୍ତୁ ଗୋଟିଏ ପାର୍ଥକ୍ୟ ରହିଛି । ଆଜି ଆମେ ଏହି ହସ୍ତାକ୍ଷର ଲିଖିତ ଗ୍ରନ୍ଥଗୁଡ଼ିକୁ ଅସୀମ ସଂଖ୍ୟାରେ ତିଆରି କରିପାରିବା, ଯାହା ଦିନେ କେବଳ ପ୍ରଧାନ କେତେକ ବ୍ୟକ୍ତି ପାଇପାରୁଥିଲେ । ବର୍ତ୍ତମାନ ତାହା ବହୁ ସଂଖ୍ୟାରେ ସର୍ବସାଧାରଣଙ୍କୁ ଆବଶ୍ୟକତା ଅନୁସାରେ ମିଳିପାରିବ ।

# ସମସ୍ତଙ୍କ ପାଇଁ ବହି

ଇଉନେସ୍କୋର (UNESCO) ୧୯୭୬ର ବାର୍ଷିକ ପରିସଂଖ୍ୟାନ ଗ୍ରନ୍ଥରେ ପ୍ରକାଶ ପାଇଛି ଯେ ଭାରତ ୧୯୭୫ରେ ୧୨,୭୦୮ ନୂଆ ବହି ଉତ୍ପାଦନ କରିଥିଲା ଅର୍ଥାତ୍ ଆମର ପ୍ରତି ଦଶ ଲକ୍ଷ ଲୋକଙ୍କ ପାଇଁ ପ୍ରାୟ କୋଡ଼ିଏ ଖଣ୍ଡ । ଏହି ବାର୍ଷିକ ପରିସଂଖ୍ୟାନ ବହି ପ୍ରକାରେ ସମଗ୍ର



ପୃଥିବୀର ଅନୁରୂପ ସଂଖ୍ୟା ୧୮୨; ଉନ୍ନତ ଦେଶମାନଙ୍କର ୩୪୬; ବିକାଶଶୀଳ ଦେଶମାନଙ୍କର ୯୦; ଏସିଆର (ଆରବୀୟ ଦେଶମାନଙ୍କୁ ଛାଡ଼ି) ୬୨; ଆମେ କେତେ ପଛରେ ଅଛେ ।। ୧୯୬୩ରେ ଭାରତର ଏହି ସଂଖ୍ୟା ସବୁତରେ ଅଧିକ ଥିଲା । (ଦଶ ଲକ୍ଷକୁ ୨୭ ନୂଆ ବହି) କାଗଜର

୧୯୭୮ ଫେବୃୟାରୀରେ ନୂଆଦିଲ୍ଲୀରେ ଅନୁଷ୍ଠିତ ୩ୟ ପୃଥିବୀ ପୁସ୍ତକ ମେଳାର ଏକ ଦୃଶ୍ୟ



ଅଭାବ ଏବଂ ଅତିରିକ୍ତ ମୂଲ୍ୟ ବୃଦ୍ଧି ବହି ଉତ୍ପାଦନ କ୍ଷେତ୍ରରେ ପତନର କାରଣ । ଏହି ଅଭାବ ଦୂର କରାଯାଇଥିଲେ ବି ଆଜି ମଧ୍ୟ ଆମେ ପ୍ରତି ଦଶ ଲକ୍ଷ ଲୋକଙ୍କ ପାଇଁ ତିରିଶ ଖଣ୍ଡରୁ ଅଧିକ ନୂଆ ବହି ଉତ୍ପାଦନ କରି ପାରିନାହୁଁ ।

ଏହି ଦୁଃଖଦ ପରିସ୍ଥିତିର ବାସ୍ତବ କାରଣ ହେଉଛି ଆମର ଦାରିଦ୍ର୍ୟ । ଆମ ଜନସଂଖ୍ୟାର ଶତକଡ଼ା ସତୁରୀ ନିରକ୍ଷର । ଏ ଦୁଇଟି ପରସ୍ପର ସଂଶ୍ଳିଷ୍ଟ । ନିରକ୍ଷରତା ଏବଂ ଦାରିଦ୍ର୍ୟ ପ୍ରାୟ ସର୍ବଦା ଏକାଠି ଅବସ୍ଥାନ

୧୯୭୮ର ପୃଥିବୀ ପୁସ୍ତକ ମେଳାରେ



କରନ୍ତି । ଗୋଟିଏକୁ ନିଃଶେଷ କରିବାକୁ ହେଲେ ଅନ୍ୟଟିକୁ ମଧ୍ୟ ନିଃଶେଷ କରିବାକୁ ହେବ । ଦୁଇଟିକୁ ନିଃଶେଷ କରିବା ପାଇଁ ବହିର ଆବଶ୍ୟକତା ସର୍ବପ୍ରଧାନ ।

ସବୁ ପ୍ରକାର ବହି ଆମର ଦରକାର—ସବୁ ପ୍ରକାର ଲୋକଙ୍କ ପାଇଁ, ସବୁ ଉପଲକ୍ଷ୍ୟ ପାଇଁ ଏବଂ ଚିତ୍ତବୃତ୍ତି ପାଇଁ । ଆମେ ଲୋଡୁ ଜ୍ଞାନଗର୍ଭକ ବହି, ଆମେ ଲୋଡୁ ବୈଜ୍ଞାନିକ, ଔଦ୍ୟୋଗିକ, ପାଠ୍ୟପୁସ୍ତକ; ଆମେ ବହି ଆବଶ୍ୟକ କରୁ ଆଧୁନିକ ସମସ୍ୟା ମୂଳକ, ଆମେ ବହି ଲୋଡୁ ଯାହା ଆମକୁ ଚିନ୍ତା କରିବାକୁ ଦିଏ, ଆମେ ବହି ଲୋଡୁ ଯାହା ଆମକୁ ହସାଏ । ଆମର ଗଳ୍ପ ବହି ଆବଶ୍ୟକ; ଆମେ ପ୍ରବୃତ୍ତିମୂଳକ ବହି ମଧ୍ୟ ଦରକାର କରୁ, ଚାଷୀମାନେ ବହି ଆବଶ୍ୟକ କରନ୍ତି ଯାହା ତାଙ୍କୁ ମୃତ୍ତିକା ଓ ଫସଲ କଥା ଶିଖାଏ । ବିମାନ ପରିଚାଳକ ବହି ଲୋଡନ୍ତି ଯାନ ପରିଚାଳନାମୂଳକ—ଏହିପରି ଆମେ ଏକ ଅସୀମ ତାଲିକା କରି ପାରିବା ।

ବହି ଆମକୁ ସାହାଯ୍ୟ କରେ ଆମ ନିଜକୁ, ଅନ୍ୟମାନଙ୍କୁ, ଯେଉଁ ପୃଥିବୀରେ ବାସ କରୁଛେ ତାହାକୁ ଏବଂ ଯାହା କରିବାକୁ ହେବ ତାହା ବୁଝିବା ପାଇଁ । ଥରେ ଆମ ହାତକୁ ଆସିଲେ ତାହା ସମ୍ପୂର୍ଣ୍ଣ ଭାବେ ଆମ ନିୟନ୍ତ୍ରଣାଧୀନ ହୁଏ—ପଢିବା ପାଇଁ, ପୁଣି ପଢିବାପାଇଁ, ଏପରିକି ଆଡେଇ ଥୋଇଦେବା ପାଇଁ ମଧ୍ୟ ।

ସିନେମା, ନାଟକ ଏବଂ ସଙ୍ଗୀତ ଭଳି ବହି ଭଲ ବା ମନ୍ଦ ହୋଇ-ପାରେ, ତାହା ନୀରସ ବା ଚିତ୍ତାକର୍ଷକ ହୋଇପାରେ, ବୁଝିବା ପାଇଁ ସହଜ ବା କଷ୍ଟ ହୋଇ ପାରେ; ମାତ୍ର କୁହାଯାଏ ଯେ, ଜଣଙ୍କର ଖାଦ୍ୟ ଅନ୍ୟ ଜଣଙ୍କର ବିଷ ହୋଇପାରେ । ମୁଁ ଯେଉଁ ବହିଟିକୁ ଅତି ଉତ୍ତମ ମନେକରେ ତାହା ତୁମକୁ ଅତି ସାଧାରଣ ବୋଧ ହୋଇ ପାରେ । ଗୋଟିଏ ବହିକୁ ତୁମେ ଅତି ଚିତ୍ତାକର୍ଷକ ମନେ କରୁଛ—ତାହା ମୋତେ ନିତାନ୍ତ ମାନ୍ଦାବୋଧ ହୋଇପାରେ ।

ଯେଉଁ ବହି ଯେଉଁ ଉଦ୍ଦେଶ୍ୟରେ ରଚିତ ସେ ଉଦ୍ଦେଶ୍ୟ ବହିଟି ଦ୍ୱାରା ସାଧିତ ହୋଇନପାରିଲେ ତାହା ହିଁ ମନ୍ଦ ବହି (ଲେଖକଙ୍କର ଉଦ୍ଦେଶ୍ୟ ଯେତେ ଭଲ ହେଉପଛେ) କିମ୍ବା ସଭ୍ୟ ଲୋକେ ଯେଉଁ କାର୍ଯ୍ୟକୁ ବିପଜ୍ଜନକ ଓ ଅହିତକର ମନେ କରନ୍ତି, ଯେଭଳି ଭାବ, ଧାରଣା ଓ ଭେଦବୁଦ୍ଧି ଇତ୍ୟାଦି ପ୍ରଚାର କରିବା ଓ ଉତ୍ସାହିତ କରିବା ବହିଗୁଡିକ

ମନ୍ଦ ବହି । ଦୃଷ୍ଟାନ୍ତ ସ୍ୱରୂପ—ଯେଉଁ ପାଠ୍ୟପୁସ୍ତକ ଜଟିଳ ଏବଂ ଅଶୁଦ୍ଧ ଭାଷାରେ ଲେଖାଯାଇ ଥିବାରୁ ଛାତ୍ରମାନଙ୍କ ସହାୟକ ନ ହୋଇ ସେମାନଙ୍କ ମନରେ ସନ୍ଦେହ ସୃଷ୍ଟି କରେ ତାହା ମନ୍ଦ ପାଠ୍ୟ ପୁସ୍ତକ । ଉତ୍ତମ ଭାବେ ଲିଖିତ ଅଥଚ ଭୁଲ ଓ ବିଭ୍ରାନ୍ତିକର ବିଷୟ ସମ୍ବଳିତ ବହି ମଧ୍ୟ ମନ୍ଦ ବହି । ଆଉ ମଧ୍ୟ ବହି ମନ୍ଦ ହୋଇପାରେ ଯଦି ତାହା ଭୁଲ ବୁଝାମଣା ଓ ବିଭେଦ ଭାବ କିମ୍ବା ଅସତ୍ୟ ପ୍ରଚାର କରେ । କିନ୍ତୁ ଆମକୁ ଯେଉଁ ବହିଟି ବ୍ୟକ୍ତିଗତ ଭାବେ ଭଲ ଲାଗୁନାହିଁ କିମ୍ବା ଯେଉଁ ଲେଖା ସହିତ ଆମେ ଏକମତ ହୋଇ ପାରୁନାହେଁ, ତାହା ମନ୍ଦ ବହି ବୋଲି ଧରିନେବା ଉଚିତ ନୁହେଁ ।

କଲକତା କଲେଜ ସ୍କୋୟାରର ରାସ୍ତା ପାର୍ଶ୍ୱରୁ ପ୍ରସିଦ୍ଧ ବହି ଦୋକାନ



# ବହି ସଂଗ୍ରହ

ଭଲ ହେଉ ବା ମନ୍ଦ ହେଉ ଖୁବ୍ କମ୍ ବହି ଆମ ହାତକୁ ଆସେ, ବିଶେଷତଃ ଆମ ନିଜ ଭାଷାରେ । ଯେଉଁମାନେ ବହି ପାଇଲେ ବ୍ୟବହାର କରି ପାରିବେ ସେମାନେ ବହି ମିଳୁଥିଲେ ମଧ୍ୟ ପାଆନ୍ତି ନାହିଁ, କାରଣ ସେମାନଙ୍କୁ ବହି ସହଜରେ ମିଳେ ନାହିଁ ।

ବହି ଉପହାର ରୂପେ ପାଇବା, ମାଗିଆଣିବା ବା ଚୋରି କରିବାକୁ ଛାଡ଼ିଦେଲେ ପଢ଼ିବାକୁ ଇଚ୍ଛା କରୁଥିବା ବହି ତୁମେ ପାଇବାର ଦୁଇଟି ମାତ୍ର ଉପାୟ ଅଛି : କିଣିବା ବା ଧାର ଆଣିବା ।

କିଛି ବହି କିଣିବା ପାଇଁ ଆମେ ସମସ୍ତେ ଇଚ୍ଛା କରୁଛେ ବା ଆବଶ୍ୟକ ମନେ କରୁଛେ । ଛାତ୍ର ଅବସ୍ଥାରେ ହୋଇନଥିଲେ ସେ ନିଶ୍ଚୟ ପାଠ୍ୟପୁସ୍ତକ କିଣିବ । ସେ ଗୋଟିଏ ଅଭିଧାନ ଓ ଆଟ୍ଲାସ୍ ପାଖରେ ରଖିବାକୁ ଇଚ୍ଛା କରିବ । ଏହା ବାହାରେ ଆମ ମଧ୍ୟରୁ ଅନେକେ ଅନ୍ୟ ବହି କିଛି ନିଜ ରୁଚି ଅନୁସାରେ ସଂଗ୍ରହ କରି ରଖିବାକୁ ଇଚ୍ଛା କରନ୍ତି; ଯାହାକୁ ମନହେଲା ବେଳେ ପଢି ପାରିବା । ଏହି ସଂଗ୍ରହରେ ଆମର ପ୍ରିୟ ପୁରୁଣା ବା ନୂଆ ବହିଥାଏ ଯାହାକୁ ଆମେ ଥରକୁଥରେ ଭଲ ଭାବେ ପଢିବାକୁ ବା ଖାଲି ଓଲଟାଇବାକୁ ଭଲ ପାଉ । କିନ୍ତୁ ଆବଶ୍ୟକ ଓ ଇଚ୍ଛା କରୁଥିବା ସମସ୍ତ ବହି କିଣିବା ଭଳି ସାମର୍ଥ୍ୟ ଥିବା ଲୋକ ଆମ ଭିତରେ ଖୁବ୍ କମ୍ ଅଛନ୍ତି । ବହି ଅଛି, ଯାହା କୌଣସି ଉଦ୍ଦେଶ୍ୟରେ, ସ୍କୁଲ ପରୀକ୍ଷା ଭଳି, ସାମୟିକ ଭାବେ ଆବଶ୍ୟକ ହୁଏ । କେତେକ ବହି କେବଳ ତଥ୍ୟ ସଂଗ୍ରହ କରିବା ପାଇଁ ବେଳେବେଳେ ଦେଖାଯାଏ । ଏସବୁ ବହି ବ୍ୟବହାରର ଉପାୟ ହେଉଛି ବନ୍ଧୁମାନଙ୍କଠାରୁ ବା ପାଠାଗାରରୁ ଧାର ଆଣିବା । ତୁମେ ତୁମର ବନ୍ଧୁଙ୍କ ସହିତ ବିସ୍ତର ଆଲୋଚନା କରି ଏପରି ଭାବେ ବହି କିଣିପାର ଯେପରି ତୁମେମାନେ ପ୍ରତ୍ୟେକେ ଯେଉଁ ବହି କିଣିବ ତାହା ଅନ୍ୟପାଖରେ ନ ଥିବ । ଏହିଭଳି ଭାବରେ ତୁମ ନିଜ ଲାଇବ୍ରେରୀରେ ଥିବା ବହି ଅପେକ୍ଷା ଅଧିକ ବହି ନିର୍ବାଚନ କରିବା ପାଇଁ ସୁବିଧା ପାଇବ ।

# ବହି ଅଂଶୀଦାର

ତୁମେ ବହି ଧାର ଆଣିଲେ, ତୁମେ ବି ଧାର ଦେବା ପାଇଁ ପ୍ରସ୍ତୁତ ଥିବା ଦରକାର । ଅନେକେ ଏଥିପାଇଁ ପଛାନ୍ତି, ସ୍ୱାର୍ଥପରତା ଦୃଷ୍ଟିରୁ ନୁହେଁ, ବହି ହଜିଯିବା ବା ନଷ୍ଟ ହୋଇଯିବା ଭୟରେ । ଏହା ହୋଇପାରେ ଏବଂ ହୋଇଥାଏ ମଧ୍ୟ । କିନ୍ତୁ ନିଜର ହେଉ ବା ଧାର ଆଣିବା ବହି ହେଉ, ଆମେ ପ୍ରତ୍ୟେକେ ତାର ଯତ୍ନ ନେଲେ ଏହା ପ୍ରାୟ ଘଟିବ ନାହିଁ । ତେଣୁ ଘନିଷ୍ଠ ଓ ବିଶ୍ୱାସୀ ବନ୍ଧୁଙ୍କ ସହିତ ଏ ବ୍ୟବସ୍ଥା କରାଯାଇପାରେ ।

ଗଳ୍ପ ବହିଟିଏ ହେଉ ପଛେ, ତୁମେ ବହି ପଢ଼ିଲାବେଳେ କେବଳ ଶୁଣୁ ନାହଁ । ଟିକିଏ ଚିନ୍ତା କଲେ, ତୁମେ ମୋ ସହିତ ଏକ ମତ ହେବ ଯଦି ମୁଁ କହେ ଯେ ପଢ଼ିଲାବେଳେ ତୁମେ ଲେଖକଙ୍କ ସହିତ କଥାବାର୍ତ୍ତା କରୁଛ । ଏହି କଥାବାର୍ତ୍ତା ତୁମେ ବହି ଶେଷ କଲାପରେ ମଧ୍ୟ ଅନେକ ସମୟ ଯାଏ ଚାଲିଥାଏ । କେତେ ଦିନ ପରେ ବହିଟି ତୁମ ଆଲମାରି ଥାକକୁ ଫେରି ଆସିବା ପରେ ଏହା ପୁଣି ଚାଲିପାରେ । ଲେଖକଙ୍କ ପ୍ରଶ୍ନ, ଉତ୍ତର ଓ ଅଭିମତ ବହିର ଦୁଇ ମଲାଟ ଭିତରେ ହିଁ ରହିଛି ଏବଂ ଗୋଟିଏ ଭଲ ବହିର ଚମତ୍କାରିତା ହେଉଛି ତୁମେ ଯାହା ପଢ଼ ସେ ବିଷୟରେ ଚିନ୍ତା କଲେ, ତୁମର କଥାବାର୍ତ୍ତା ପୁଣି ଚାଲେ ଏବଂ ଲେଖକଙ୍କ ଠାରୁ ତୁମେ ତଟକା ଉତ୍ତର ଓ ବ୍ୟାଖ୍ୟା ପାଇ ବହିଟିକୁ ଅଧିକ ବୁଝିପାର । ଯେତେବେଳେ ତୁମ ବନ୍ଧୁମାନେ ସେ ବହିଟି ପଢ଼ିବେ ସେମାନେ ମଧ୍ୟ କଥାବାର୍ତ୍ତାରେ ଯୋଗଦେଇ ପାରିବେ ଏବଂ ତୁମେ ସମସ୍ତେ ବହିଟିକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ଆହୁରି ଅଧିକ ବୁଝି ପାରିବ ।



# ଲାଇବ୍ରେରୀ

ବହି ପାଇବାରେ ସାହାଯ୍ୟ କରିବାରେ ଲେଣ୍ଡିଙ୍ଗ୍ ଲାଇବ୍ରେରୀ (ଧାର ଦେବା ପାଠାଗାର) ଭଳି ଅନ୍ୟ କୌଣସି ଅନୁଷ୍ଠାନର ପ୍ରାଧାନ୍ୟ ନାହିଁ । ଯେଉଁ ଦେଶମାନଙ୍କରେ ଲୋକେ ଯଥେଷ୍ଟ ବହି କିଣନ୍ତି ସେଠି ମଧ୍ୟ ଏହି କଥା । ବାସ୍ତବରେ ଲୋକେ ଯେତେ ଅଧିକ ବହି କିଣନ୍ତି

ଆମଦେଶର ଅନ୍ୟ ଅଧିକାଂଶ ସ୍କୁଲ ପିଲାଙ୍କ ଠାରୁ ଏମାନେ ଭାଗ୍ୟବାନ୍ । ଏ ସ୍କୁଲରେ ଏକ ଉତ୍ତମ ପାଠାଗାର ଅଛି



ପାଠାଗାରର ସୁବିଧା ଓ ଆବଶ୍ୟକତା ଯେତେ ବେଶି ହୁଏ । ଏ କ୍ଷୁଧାତୃପ୍ତି ପାଇଁ ଯେତେ ଖିଆଯାଏ ତାହା ସେତେ ବଢେ ।

ପ୍ରଗତିଶୀଳ ଦେଶମାନେ ସେମାନଙ୍କ ସମଗ୍ର ଦେଶ ବ୍ୟାପୀ ସମ୍ପୂର୍ଣ୍ଣ ଶୁଳ୍କଶୂନ୍ୟ ପାଠାଗାର ପ୍ରତିଷ୍ଠାକୁ ଲକ୍ଷ୍ୟ ରୂପେ ଗ୍ରହଣ କରିଛନ୍ତି । ଉଦାହରଣ ସ୍ୱରୂପ—ଗ୍ରେଟ୍ ବ୍ରିଟେନ୍ ଭଳି କେତେକ ଦେଶ ଏହି ଲକ୍ଷ୍ୟ ପ୍ରାୟ ହାସଲ କରିଛନ୍ତି । ୧୯୭୬ରେ ଇଂଲଣ୍ଡ ଓ ୱେଲସ୍‌ରେ ଜଣ ପିଛା ହାରାହାରି ୧୧.୪ ବହି ସର୍ବସାଧାରଣ ପାଠାଗାରରୁ ଧାର ନେଇଥିଲେ । ସ୍କଟ୍‌ଲଣ୍ଡ ଓ ଉତ୍ତରଆୟାର୍ଲଣ୍ଡରେ ଏହାର ସମାନୁପାତିକ ସଂଖ୍ୟା ଯଥାକ୍ରମେ ୯.୪ ଏବଂ ୬ ୬ । ଋଷିଆରେ ୧୯୭୬ ବେଳକୁ ୩୬୦,୦୦୦ ଲାଇବ୍ରେରୀ ପ୍ରତିଷ୍ଠିତ ହୋଇଥିଲା, ଅର୍ଥାତ୍ ପ୍ରତି ହଜାର ବା ତା'ଠାରୁ ଊଣା ଲୋକଙ୍କ ପାଇଁ ଗୋଟିଏ ପାଠାଗାର ଥିଲା ଏବଂ ସମଗ୍ର ୩୦ କୋଟି ଲୋକ ସଂଖ୍ୟା ମଧ୍ୟରୁ ମୋଟ ୧୮ କୋଟି ଲୋକ ପାଠାଗାରକୁ ବ୍ୟବହାର କରୁଥିଲେ । ଉକ୍ତ ଉଭୟ ଦେଶରେ ଏ ସେବା ସମ୍ପୂର୍ଣ୍ଣ ମୁକ୍ତ ବା ଶୁଳ୍କ ଶୂନ୍ୟଥିଲା ।



ଭାରତରେ ଏହି ଲକ୍ଷ୍ୟ ସ୍ଥିର କରାଯାଇ ଥିଲେ ମଧ୍ୟ ଆମେ ସେଠାରେ ପହଞ୍ଚିବାକୁ ଆହରି ଅନେକ ବାଟ ଯିବାକୁ ବାକୀ ଅଛି । ଆମ ଦେଶ ଅତି ବିଶାଳ ଏବଂ ଲୋକ ସଂଖ୍ୟା ଅତି ଅଧିକ । ଏହା ଏକ ଖୁବ୍ ଗରିବ ଦେଶ ମଧ୍ୟ । ଅନେକ ଜରୁରୀ କାମ ଆମ ହାତରେ ରହିଛି । ଯେପରିକି ସବୁ ଲୋକଙ୍କ ପାଇଁ ନିର୍ମଳ ପାନୀୟ ଜଳ ଯୋଗାଇବା ଏବଂ ପିଲାଙ୍କୁ ଅନ୍ତତଃ ପ୍ରାଥମିକ ଶିକ୍ଷା ଦେବା । ଏହିସବୁ ଜରୁରୀ

କାର୍ଯ୍ୟ ଭିତରେ ଦେଶ ବ୍ୟାପୀ ସୁଶୃଙ୍ଖଳ ପାଠାଗାର ସ୍ଥାପନ ଅନ୍ୟତମ ।

ଏତେ ଜରୁରୀ କାମଥିବା ଦୃଷ୍ଟିରୁ ଆମର କେନ୍ଦ୍ର, ପ୍ରାଦେଶିକ ତଥା ସ୍ଥାନୀୟ ଶାସନ ସଂସ୍ଥାମାନେ ଆସନ୍ତା କେତେବର୍ଷ ପର୍ଯ୍ୟନ୍ତ

କଲିକତା ନ୍ୟାସନାଲ ଲାଇବ୍ରେରୀର କେନ୍ଦ୍ରୀୟ ପଠନ ଗୃହ । ଏହା ଭାରତର ପ୍ରଧାନ ଅଭିଲେଖ ପାଠାଗାର । ଆଇନାନୁସାରେ ଭାରତରେ ପ୍ରକାଶିତ ସମସ୍ତ ଗ୍ରନ୍ଥ ଏଠାକୁ ପଠାଇବା ବାଧ୍ୟତାମୂଳକ । ଆଇନ ଦ୍ୱାରା ଚିହ୍ନିତ ରଖାଯିବା ଅନ୍ୟଦୁଇଟି ହେଉଛି ସେଣ୍ଟ୍ରାଲ ଲାଇବ୍ରେରୀ, ବମ୍ବେ ଏବଂ କନ୍ନେମରା ଲାଇବ୍ରେରୀ, ମାନ୍ଦ୍ରାଜ ।



ପାଠାଗାର ପ୍ରତି ଆମ ଆବଶ୍ୟକତା ଅନୁଯାୟୀ ଯେତେ ନଜର ଦେବା ଓ ଅର୍ଥ ମଞ୍ଜୁର କରିବା ଦରକାର ତାହା ଦେଇ ପାରିବେ ବୋଲି ଆଶା କରାଯାଇ ନ ପାରେ । ଏହି ପରିସ୍ଥିତିରେ ଆମେ ଯେଉଁମାନେ ବିଶ୍ୱାସ କରୁ ଯେ ଆମ ନିଜର ଓ ସମାଜର ଉନ୍ନତି ପାଇଁ ବହି ଗୁରୁତ୍ୱପୂର୍ଣ୍ଣ ଓ ଆବଶ୍ୟକ, ଆମେ ଯେତେ ପାରିବା ସେତେ କରିବା ଉଚିତ ।

ଆମେ କଣ କରି ପାରିବା ? ଆମେ ଯେଉଁଠାରେ ଥାଉ—ସ୍କୁଲରେ, କାର୍ଯ୍ୟ କ୍ଷେତ୍ରରେ, ଯେଉଁଠାରେ ବାସ କରୁ ସେଠାରେ—ଆମେ ଏହା ଆରମ୍ଭ କରିବା । ସ୍କୁଲରେ ଲାଇବ୍ରେରୀ ନ ଥିଲେ ବା ଥାଇ ଭଲ ଭାବେ ଚଳୁନଥିଲେ ଛାତ୍ରମାନେ ସେଠାରେ ଶିକ୍ଷକଙ୍କ ସହଯୋଗରେ ଲାଇବ୍ରେରୀ ଖୋଲିବା ଉଚିତ, କିମ୍ବା ଥିଲେ ଉତ୍ତମ ଭାବେ ଚଳାଇବା ଉଚିତ । ଆମେ ଯେଉଁଠାରେ ବାସ କରେ ସେଠାରେ ଆନୁଷ୍ଠାନିକ ଭାବେ ବା ଘରୋଇ ଭାବେ ପାଠାଗାର କିମ୍ବା ବହି ଧାର ଦେବା କ୍ଲବ ସାନ ଏବଂ ବଡଙ୍କ ପାଇଁ ଖୋଲିବା ଉଚିତ୍ । ଆମ ଦେଶର ବିଭିନ୍ନ ଅଞ୍ଚଳରେ ଅନେକତ୍ର ଏହା ହୋଇଛି ଏବଂ ଆମେ ଚେଷ୍ଟା କଲେ ଅନ୍ୟ ଅନେକ ସ୍ଥାନରେ ଏହା ହୋଇ ପାରିବ ।

କିନ୍ତୁ ପାଠାଗାର ପାଇଁ ନିୟମିତ ଭାବରେ ବିଭିନ୍ନ କିସମର ବହି ଆସିବା ଉଚିତ୍ । ପୂର୍ବରୁ କୁହାଯାଇଛି ଆମ ନିଜ ଭାଷାମାନଙ୍କରେ ଏହାର ବିଶେଷ ଅଭାବ । ପାଠ୍ୟପୁସ୍ତକକୁ ଛାଡ଼ି ଦେଲେ ତରୁଣମାନଙ୍କ ପାଇଁ ଅତି ଅଳ୍ପ ବହି ପ୍ରକାଶ ପାଏ । ଅଧିକାଂଶ ଭାରତୀୟ ଭାଷାରେ ବୟସ୍କଙ୍କ ପାଇଁ ମଧ୍ୟ ବହିର ପରିସର ଅତ୍ୟନ୍ତ ସୀମିତ ।

ଅନେକ ସମୟରେ କୁହାଯାଏ ଯେ, ଚାହିଦା ଥିଲେ ଯୋଗାଣ ହୁଏ । ଆମର ବିଭିନ୍ନ ପ୍ରକାରର ଯଥେଷ୍ଟ ବହି ନାହିଁ । କାରଣ ଚାହିଦା ନାହିଁ । ନ୍ୟାସନାଲ୍ ବୁକ୍ ଟ୍ରଷ୍ଟର ପୂର୍ବତନ ଅଧ୍ୟକ୍ଷ ପ୍ରଫେସର ଏସ୍. ଗୋପାଳ ଥରେ ତାଙ୍କ ଭାଷଣରେ କହିଥିଲେ ଯେ, "ଭାରତରେ ବହି ପାଇଁ କ୍ଷୁଧା ଅଛି କି ନାହିଁ କହି ହେବ ନାହିଁ, ମାତ୍ର ଆମେ ନିଶ୍ଚିତ ଭାବେ ବହି, ଦୁର୍ଭିକ୍ଷଗ୍ରସ୍ତ—ଆମର ଯଥେଷ୍ଟ ବହି ନାହିଁ ।" ତାଙ୍କର ଅକଥିତ ଏବଂ ଅନୁତ୍ତରିତ ପ୍ରଶ୍ନ ହେଉଛି, ଆମର ଏତେ କମ୍ ବହି ଥିବାର କାରଣ କ'ଣ ଆମେ ଯେତିକି ପାଉଛେ, ତା'ଠାରୁ ଆଉ ଅଧିକ ଆବଶ୍ୟକ ନାହିଁ ? କାରଣ ଆଉ ଅଧିକ ପାଇଁ ଆମର କ୍ଷୁଧା ନାହିଁ ?

ତୁମ ନିଜ ପାଇଁ ଏବଂ ଦେଶ ପାଇଁ ତୁମର ଉତ୍ତର କ'ଣ ?



ହଳଦିଆ



ଘନ ଲୋହିତାଭ



ଶାଗୁଆନୀଳ



କଳା



ହଳଦିଆ
ଓ ଘନ ଲୋହିତାଭ



ହଳଦିଆ, ଘନ ଲୋହିତାଭ
ଶାଗୁଆ ନୀଳ ଓ କଳା।



ହଳଦିଆ, ଘନ ଲୋହିତାଭ
ଓ ଶାଗୁଆ ନୀଳ

## THE FOUR COLOUR PROCESS